Anil Kum Panigr

# ଦାନ୍ତକଣା ର ମୁକାବିଲା ସୁପର ଫାଇଟର ହିଁ କରିପାରେ!






















ଆଉ ଫୋରହ୍ୟାନ୍ସ ଫ୍ଲୋରାଇଡ ମଧ୍ୟ ଆପଣଙ୍କୁ ଦିଏ ସେହି ବିଖ୍ୟାତ ଫୋରହ୍ୟାନ୍ସ ର ଯତ୍ନ!




**ଫୋରହ୍ୟାନ୍ସ ଫ୍ଲୋରାଇଡ - ମାଢ଼ିକୁ ସଂକୁଚିତ କରେ, ଦାନ୍ତକଣା ରୋଧ କରେ**

404-GM-183 OR



ଅଫିସରେ ସ୍ୱାମୀଙ୍କ ଖଟଣି, ପିଲାମାନଙ୍କର ଖେଳକୁଦ,
ଆଉ ମୋର ଦୁନିଆଁ ଯାକର ଘରକାମ କରିବା ପାଇଁ—ଆମ
ସମସ୍ତଙ୍କୁ ପୁଷ୍ଟି ଯୋଗାଏ ହର୍ଲିକ୍ସ । ପରିବାରରେ
ଆମ ସମସ୍ତଙ୍କ ସ୍ୱାସ୍ଥ୍ୟ ଭଲ ରହିବା ଲାଗି ମୁଁ ପ୍ରତିଦିନ
ସେମାନଙ୍କୁ ହର୍ଲିକ୍ସ ଖାଇବାକୁ ଦେଉଛି ।




ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ ।
ଏଥିରେ କ୍ରୀମଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ
ସୁନେଲି ଗହମର ସମସ୍ତ ପୋଷଣକାରି ଗୁଣ ଭରି
ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର
୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ
ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ
ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।
Horlicks
The Great Nourisher
ନୂଆ ସମୟର ନୂଆ ରୂପ
ପୁଷ୍ଟି ଯୋଗାଇବାରେ ଅତୁଳନୀୟ

# ଜହ୍ନମାମୁଁ



ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ଭାରତରେ ଯେତେ ପ୍ରକାର ଦେବାଳୟ ଅଛି, ପୃଥିବୀର କୌଣସି ଦେଶରେ ସେଭଳି ବୈଚିତ୍ର୍ୟ ନାହିଁ । ଏ ସଂଖ୍ୟାର ଚିତ୍ରକଥାରେ ଯେଉଁ ଅମରନାଥର ବର୍ଣ୍ଣନା ଦିଆଯାଇଛି, ତାହା ଏକ ବିଚିତ୍ର ଦେବାଳୟ । ତାହା ମନୁଷ୍ୟ-ନିର୍ମିତ ନୁହେଁ, ପ୍ରକୃତି-ନିର୍ମିତ । ହିମାଳୟର ଚିର-ନିର୍ଜନ ଅଞ୍ଚଳରେ ପ୍ରକୃତିର ଅପୂର୍ବ ଲୀଳାର ତାହା ଏକ ଦୃଷ୍ଟାନ୍ତ ।

## ଅମରବାଣୀ

ଧନାଦିକେଷୁ ବିଦ୍ୟନ୍ତେ, ଯେଽତ୍ର ମୂର୍ଖା ସୁଖାଶୟା !
ତପ୍ତା ଗ୍ରୀଷ୍ମେଣ ସେବନ୍ତେ, ଶୈତ୍ୟାର୍ଥଂ ତେ ହୁତାଶନମ୍ !!

[ଧନ ଦ୍ୱାରା ସୁଖ ଲାଭ କରିବ, ଯିଏ କଳ୍ପନା କରେ ସିଏ, ମୂର୍ଖ । ଗ୍ରୀଷ୍ମ ଋତୁରେ ଶୀତଳତା ପାଇବା ଆଶାରେ ଅଗ୍ନିର ଆଶ୍ରୟ ନେବା ଯାହା, ସୁଖ ଆଶାରେ ଧନର ଆଶ୍ରୟ ନେବା ସେଇଆ ।]

ବର୍ଷ : ୧୯ ଡିସେମ୍ବର ୧୯୮୫ ଅଙ୍କ : ୬

ପ୍ରତିସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦



ଛୋଟ୍ଟ ମନ ବ୍ୟସ୍ତ, ତୋଳେ ଖାଲି ଦିଅନ୍ତି ଠେଲି
ଖେଳୁଥାଆନ୍ତି ଅନ୍ୟମାନେ ସିଏ ବସେ ଝାଙ୍କି।
ଭାଳି ଭାଳି ସ୍ଥିର କଲା ସିଏ ତ ନୂଆଁ ଶୈଳି
ମଜାଳିଆ ଖେଳ ଖେଳିବ ଘରେ ବସିକି ॥

ଏଙ୍କୋ ପେନ ସେଟ୍ ଆଉ କାଗଜ କାଢିଲା।
ଚୁପ୍‌ଚାପ୍ ଏକୁଟିଆ ଚର୍ଚ୍ଚ ଚର୍ଚ୍ଚ ଆଙ୍କିଲା ।
ହମ୍ପଟି-ଡମ୍ପଟି, ଗୋଲଷା-କୁଣ୍ଢେଇ, ବାଘମାମୁଁ ଭିଏଇଲା
ହଟଚମଟ ବିଦ୍ୟା ଭଳି ନାନା ଚିତ୍ର ରଙ୍ଗେଇଲା॥

ଏଙ୍କୋ ଅତି ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ଗୁଣ୍ଡି ପାଟଳ, ନାଲିଆ ।
ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ପେ ଦଶ ରଙ୍ଗିଆ ॥



# ଏଙ୍କୋ
ସ୍କେଚ୍ ପେନ
ରଙ୍ଗ ରାଇଜରେ ତମେ ହୁଅ ରଜା - ରଙ୍ଗେଇ, ଚିତ୍ରେଇ ମିଳେ କେତେ ମଜା !

# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ବାଘମାମୁଁ ପାଇଁ

ଦିଲ୍ଲୀ ଚିଡ଼ିଆଖାନାରେ ଦାରୁଣ ଗରମ କବଳରୁ ଧନା ବାଘକୁ ରକ୍ଷା କରିବା ନିମନ୍ତେ ତାପଶୀତଳୀକରଣ ଯନ୍ତ୍ର ଖଞ୍ଜି ଦିଆଯାଇଛି । ଅନ୍ୟ ବାଘଙ୍କୁ ପଙ୍ଖା ଦିଆଯାଇଛି ।

## ବଧିରଙ୍କ ପାଇଁ

ଇଂଲଣ୍ଡ୍‌ର ଏସେକ୍ସ୍ ବିଶ୍ୱବିଦ୍ୟାଳୟର ବିଜ୍ଞାନ ବିଭାଗ ଗୋଟିଏ ଯନ୍ତ୍ର ଆବିଷ୍କାର କରିଛନ୍ତି । ବଧିରମାନଙ୍କ ସକାଶେ ପ୍ରେରିତ ବାର୍ତ୍ତା ବେ ଜରିଆରେ ନୁହେଁ, ଚିତ୍ର ଜରିଆରେ ପର୍ଦ୍ଦାରେ ପ୍ରତିଫଳିତ ହେବ ।





## ପ୍ରାଗୈତିହାସିକ ପ୍ରଦର୍ଶନୀ

ପ୍ୟାରିସ ମହାନଗରୀଠୁଁ ବିଇଶହ କିଲୋମିଟର ଦୂରବର୍ତ୍ତୀ ଗୋଟିଏ ଅଞ୍ଚଳରେ ପ୍ରାଗୈତିହାସିକ ଯୁଗର ଜୀବଜନ୍ତୁମାନଙ୍କ ପ୍ରତିମୂର୍ତ୍ତିମାନ ନିର୍ମାଣ କରାଯାଇଛି । ସେ ଗୁଡ଼ିକ ଏତେ ଜୀବନ୍ତ ଦିଶୁଛନ୍ତି ଯେ ଆଖପାଖରେ ଥିବା ଜୀବନ୍ତ ପଶୁମାନେ ସେମାନଙ୍କୁ ଦେଖି ଡରି ପଳାଉଛନ୍ତି !

## ଜାଣନ୍ତି କି ?

୧. ଚମ୍ବଲ ନଦୀ କେଉଁ ନଦୀର ଶାଖା ?

୨. ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦିଗରେ ସର୍ବାଧିକ ଉଦ୍ୟମ କିଏ କରିଥିଲେ ?

୩. ନର୍ମଦା ଛଡ଼ା ଆରବ ସାଗରରେ ପଡ଼ୁଥିବା ଦ୍ୱିତୀୟ ବିଖ୍ୟାତ ନଦୀର ନାମ କ'ଣ ?

୪. ଓଡ଼ିଶାର କେଉଁ ନଗରୀରେ ଏକଦା ସବୁଠାରୁ ଅଧିକ ସଂଖ୍ୟକ ପ୍ରାଚୀନ ମନ୍ଦିର ଦେଖିବାକୁ ମିଳେ ?

୫. କେଉଁ ଭାରତ ବିଖ୍ୟାତ ବୈଜ୍ଞାନିକ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ?

(୬୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

ପ୍ରାଚୀନ ସାହିତ୍ୟର ଚରିତ :

# ଅମ୍ବରୀଷ

ଅମ୍ବରୀଷ ଥିଲେ ଜଣେ ଧର୍ମାତ୍ମା ରାଜା । ସେ ଥିଲେ ବିଷ୍ଣୁ ଭକ୍ତ । ବିଷ୍ଣୁ ତାଙ୍କୁ ବର ଦେଇଥିଲେ କି ତାଙ୍କ ସୁଦର୍ଶନ ଚକ୍ର ସର୍ବଦା ତାଙ୍କୁ ରକ୍ଷା କରୁଥିବ ।

ଥରେ ସେ ବର୍ଷକାଳ କଠୋର ନୀତି ନିୟମ ପାଳିସାରି ଶେଷ ତିନିଦିନ ଉପବାସ କଲେ । ଶେଷଦିନ ସେ ଉପବାସ ଭଙ୍ଗ କରିବାକୁ ଯାଉଛନ୍ତି ସେତିକିବେଳେ ପହଞ୍ଚିଗଲେ ମୁନି ଦୁର୍ବାସା । ଦୁର୍ବାସା କ୍ରୋଧୀ ବୋଲି କିଏ ବା ନ ଜାଣେ ? ସେ କହିଲେ, "ରାଜା, ମୁଁ ସ୍ନାନ କରି ଆସୁଛି । ଏକତ୍ର ଖାଇବା ।"

କିନ୍ତୁ ଅନେକ ସମୟ ଗଲା । ଦୁର୍ବାସା ଫେରିଲେ ନାହିଁ । ଏଣେ ଯେଉଁ ଶୁଭ ମୁହୂର୍ତ୍ତରେ ରାଜା ନିଜ ଉପବାସ ଭଙ୍ଗ କରିବା କଥା, ସେ ମୁହୂର୍ତ୍ତ ବିତି ଯାଉଥିବାରୁ ପୁରୋହିତମାନଙ୍କ ନିର୍ଦ୍ଦେଶରେ ରାଜା ସାମାନ୍ୟ ଜଳ ଗ୍ରହଣ କଲେ, ଖାଦ୍ୟ ନୁହେଁ ।

ଦୁର୍ବାସା ଫେରି ଆସି ରାଜା ଜଳ ଗ୍ରହଣ କରୁଥିବାର ଦେଖି ପକାଇ ଖପା ହୋଇଗଲେ । ନିଜକୁ ଅପମାନିତ ମନେ କରି ସେ ନିଜ ଜଟାରୁ ଖଣ୍ଡିଏ ଛିଡାଇ ତଳେ ଫୋପାଡି ଦେଲେ । ସଙ୍ଗେ ସଙ୍ଗେ ଗୋଟିଏ ଭୀଷଣ ରାକ୍ଷସ ପ୍ରାୟ ଜୀବ ବାହାରି ରାଜା ଅମ୍ବରୀଷଙ୍କୁ ଖାଇବାକୁ ଗୋଡ଼ାଇଲା । ସମୟ ନଷ୍ଟ କରିବାର ଉପାୟ ନଥିଲା । ରାଜା ସୁଦର୍ଶନଙ୍କୁ ସ୍ମରଣ କରିବା ମାତ୍ରେ ସୁଦର୍ଶନ ଚକ୍ର ତାଙ୍କ କପାଳରୁ ନିର୍ଗତ ହୋଇ ସେ ରାକ୍ଷସକୁ ଆଖି ପିଛୁଳାକେ ନିପାତ କଲା ଓ ତା'ପରେ ଦୁର୍ବାସାଙ୍କ ଆଡ଼େ ଧାବମାନ ହେଲା । ଦୁର୍ବାସା ଦୌଡିଲେ । କେହି ତାଙ୍କୁ ଆଶ୍ରୟ ଦେଲେ ନାହିଁ । ସେ ଯାଇ ବିଷ୍ଣୁଙ୍କ ଶରଣ ନେଲେ । ବିଷ୍ଣୁ କହିଲେ, "ସୁଦର୍ଶନ ଚକ୍ର ଅମ୍ବରୀଷ ବ୍ୟବହାର କରିଛନ୍ତି । ଏକମାତ୍ର ସେ ଏହାକୁ ପ୍ରତ୍ୟାହାର କରି ପାରିବେ ।"

ଅଗତ୍ୟା ଦୁର୍ବାସା ଯାଇ ପୁଣି ଅମ୍ବରୀଷଙ୍କ ପାଖରେ ପହଞ୍ଚିଲେ ଓ କ୍ଷମାଭିକ୍ଷା କଲେ । ରାଜା ଅମ୍ବରୀଷ ବିଷ୍ଣୁଙ୍କୁ ସ୍ମରଣ କରି ସୁଦର୍ଶନ ଚକ୍ର ପ୍ରତ୍ୟାହାର କରିନେଲେ ।






[୧୨]

[ତାନ୍ତ୍ରିକ ଶଂଖୁ ପହୁଞ୍ଚିବା ନିର୍ଜନ ଅଞ୍ଚଳରେ ଚନ୍ଦ୍ରବର୍ମାଙ୍କ ସହ ହଠାତ୍ କାପାଳିନୀର ସାକ୍ଷାତ୍ ହେଲା । ଶଂଖୁକୁ ଦମନ କରିବାର ଉପାୟ ଉଭୟେ ଚିନ୍ତା କଲେ । ସୂର୍ଯ୍ୟୋଦୟ ବେଳେ ଗୋଟିଏ ପାହାଡ଼ ଉପରେ ଥିବା ଯେଉଁ ଶିଳା ଉପରେ ଠିଆ ହୋଇ ଶଂଖୁ ମନ୍ତ୍ର ପଢୁଥାଏ, ସେହି ଶିଳା ଦେହରେ ଦଉଡ଼ି ବାନ୍ଧି ରଖାଗଲା । ଶଂଖୁ ଆସି ତାହା ଉପରେ ଠିଆ ହେବା ମାତ୍ରେ ଦଉଡ଼ି ଝିଙ୍କି ଦିଆଗଲା । ତା'ପରେ...]

"ସର୍ବନାଶ! ସର୍ବନାଶ!" ବୋଲି ଚିତ୍କାର କରି ତାନ୍ତ୍ରିକ ଶଂଖୁ ନିଜ ମନ୍ତ୍ରଦଣ୍ଡକୁ ନିଜ ମନ୍ତ୍ର-ଗୃହ ଆଡ଼େ ଫିଙ୍ଗି ଦେଲା । ମନ୍ତ୍ର-ଗୃହ ଭୀଷଣ ଶବ୍ଦ କରି ଶୂନ୍ୟକୁ ଡେଇଁ ପଡି ଉଡିଗଲା । ସେ ଦୃଶ୍ୟ ଦେଖିବା ମାତ୍ରେ କାପାଳିନୀର ଚେତା ବୁଡ଼ିଗଲା । ଚନ୍ଦ୍ରବର୍ମା ସେ ଆଶ୍ଚର୍ଯ୍ୟ ଘଟଣା ଦେଖି କାବା ହୋଇଗଲେ । ଘୂରି ଘୂରି ମନ୍ତ୍ର-ଗୃହ ଯାଇ ସରୋବରରେ ପଡ଼ିଲା । କାପାଳିନୀର ପୁଣି ଚେତା ଫେରି ଆସିଲା । ସେ ଧୀରେ ଧୀରେ ଆଖି ଖୋଲିଲା । ସେତେବେଳକୁ ଯାଇ ଚନ୍ଦ୍ରବର୍ମା ତା' ବିଷୟରେ ସଚେତ ହେଲେ । କାପାଳିନୀ ଉଠି ବସିବାର ଚେଷ୍ଟା କରି ନୀରସ କଣ୍ଠରେ କହିଲା, "ଚନ୍ଦ୍ରବର୍ମା !"



ଚନ୍ଦ୍ରବର୍ମାଙ୍କ ଏକାଗ୍ରତା ଭଙ୍ଗ ହେଲା । ସେ ଦେଖିଲେ ପଥର ଦେହରେ ଭର ଦେଇ କାପାଳିନୀ କୌଣସି ମତେ ଉଠି ଠିଆ ହେବାର ଚେଷ୍ଟା କରୁଛି । ସେ ତାକୁ ଉଠି ଠିଆ ହେବାକୁ ସାହାଯ୍ୟ କଲେ ।

କାପାଳିନୀକୁ ପାଖରେ ପାଇ ଚନ୍ଦ୍ରବର୍ମା ଆଶ୍ୱସ୍ତ ହେଲେ । ଶଂଖୁକୁ ତଳେ ପକାଇବା ଯୋଜନାରେ ବ୍ୟସ୍ତ ରହି କାପାଳିନୀର ଅବସ୍ଥା କପର ଅଛି ସେ ବିଷୟରେ ଚିନ୍ତା କରିବାକୁ ସେ ସମୟ ପାଇ ନଥିଲେ ।

କିନ୍ତୁ କାପାଳିନୀର ମନୋଭବ ଦେଖି ଓ ତା' କଥା ଶୁଣି ତାଙ୍କ ମନ ଖରାପ ହୋଇଗଲା । କାପାଳିନୀ ଦୀର୍ଘନିଃଶ୍ୱାସ ଛାଡ଼ି କହିଲା,

"ଚନ୍ଦ୍ରବର୍ମା! ମୋତେ ଦୁର୍ଭାଗ୍ୟ ଗ୍ରାସ କରିଛି କହିବାକୁ ହେବ । ଆମେ ଯେ ଏତେ କଷ୍ଟ କରି, ଜୀବନକୁ ପାଣି ଛଡ଼ାଇ ଏ ଦୁର ଅଞ୍ଚଳକୁ ଆସିଲୁଁ, ତା'ର ଆଉ କୌଣସି ମୂଲ୍ୟ ନାହିଁ । ପ୍ରଥମେ ଆମେ ଯେପରି ଅସହାୟ ଅବସ୍ଥାରେ ରହିଥିଲୁଁ, ବର୍ତ୍ତମାନ ପୁଣି ସେହି ଅବସ୍ଥାକୁ ଫେରିଗଲୁଁ । ହତାଶା, ପରିଶ୍ରମ ଓ ଦୁଃଖହିଁ ଆମ କପାଳରେ ଲେଖା ଥିଲା ।"

କାପାଳିନୀର ଏ ଦାରୁଣ ମନଦୁଃଖର କାରଣ ଠଉରାଇବା ନିମନ୍ତେ ଚନ୍ଦ୍ରବର୍ମା ଚେଷ୍ଟା କଲେ ଓ ସେ ସରୋବର ଆଡ଼େ ଦୃଷ୍ଟି ପାତ କଲେ । ସେ ସରୋବର ନିଶ୍ଚୟ କୌଣସି ନଦୀ ସହ ସଂଯୁକ୍ତ ଥିଲା । କାରଣ ନଦୀରେ ଜୁଆର ଆସିଥିବାରୁ ସରୋବର ଉଚ୍ଛୁଳି ଉଠୁଥିବାର ଜଣା ପଡୁଥିଲା ।

"କାପାଳିନୀ! ଏ ମନ୍ଦିର-ଗୃହ ସଙ୍ଗେ ସଙ୍ଗେ ତହିଁ ଭିତରେ ଥିବା ଯାଦୁ ଶଂଖ ମଧ୍ୟ ଜଳ ଗର୍ଭରେ ଲୀନ ହେଲା । ତମ ହତାଶାର କାରଣ କ'ଣ ଏଇଆ?" ଚନ୍ଦ୍ରବର୍ମା ପଚାରିଲେ ।

"ହିଁ । ତମ ଅନୁମାନ ସତ୍ୟ । ଶଂଖର ମନ୍ଦିର-ଗୃହ ଭିତରେ ଯେ ଖାଲି ସେ ଅପୂର୍ବ ଶକ୍ତିଶାଳୀ ଶଂଖଟି ଥିଲା, ତାହା ନୁହେଁ । ଆହୁରି ଅନେକ ଯାଦୁ ସାମଗ୍ରୀ ବି ରହିଥିଲା । ସବୁ ଗଲା । ମୋର ଅବଶ୍ୟ କେବଳ ସେ ଶଂଖଟି ପ୍ରତି ଆକର୍ଷଣ ଥିଲା । ତେବେ ଅନ୍ୟାନ୍ୟ ସାମଗ୍ରୀ ଦ୍ୱାରା ତମର ସହାୟତା

କରିବ ବୋଲି ଭାବୁଥିଲ । ସେସବୁ ଶକ୍ତିଶାଳୀ ବସ୍ତୁ ପାଇଥିଲେ ଶତ୍ରୁଙ୍କୁ ପରାଜିତ କରି ରାଜ୍ୟ ଫେରି ପାଇବା ତମ ପକ୍ଷରେ ବହୁତ ସହଜ ହୋଇଥାନ୍ତା । କିନ୍ତୁ ସବୁ ସରୋବର ତଳେ ହଜିଗଲା । ତମ ଅବସ୍ଥା ବି ପୂର୍ବବତ୍ ରହିଲା ।" କାପାଳିନୀ ଭଙ୍ଗଭଙ୍ଗା କଣ୍ଠରେ କହିଲା ।




ହାତ ପାଆନ୍ତାକୁ ଆସି ସେସବୁ ଅପୂର୍ବ ଶକ୍ତିଶାଳୀ ବସ୍ତୁମାନ ଯେପରି ଖସି ଚାଲିଗଲେ, ସେକଥା ଚିନ୍ତା କରି ଚନ୍ଦ୍ରବର୍ମା କିଛି ସମୟ ପାଇଁ ଭୀଷଣ ହତାଶ ଅନୁଭବ କଲେ । ତା'ପରେ ଦମ୍ଭ ସଞ୍ଚୟ କରି କହିଲେ, "କାପାଳିନୀ ! ଆଉ ସେସବୁ କଥା ଚିନ୍ତା କରି ଲାଭ ନାହିଁ । ତେବେ ଦୁଷ୍ଟ ତାନ୍ତ୍ରିକ ଶଂଖୁ ଯେ ଚିରଦିନ ପାଇଁ ଜଳ ଗର୍ଭରେ ପଡ଼ି ଇହଲୋକରୁ ଯାଇଛି, ଏହା କ'ଣ କମ୍ ସନ୍ତୋଷର କଥା ?"

କାପାଳିନୀ କିଛି କହିଲା ନାହିଁ । ଚନ୍ଦ୍ରବର୍ମା ତା' ଆଡ଼େ ଅନାଇ ତା' ଦୁଃଖର ଗଭୀରତା ଅନୁଭବ କଲେ ଓ କହିଲେ, "କାପାଳିନୀ ! ସେ ଯାଦୁ ଶଂଖଟି ଆୟତ୍ତ କରିଥିଲେ ତୁମେ ପୁନଃଯୌବନ ଓ ଦୀର୍ଘ ଜୀବନ ପାଇଥାନ୍ତ । ଆଚ୍ଛା, ଅନ୍ୟ କୌଣସି ଉପାୟରେ ତାହା ପାଇବା ସମ୍ଭବ ନୁହେଁ ?"

"ନା, ଚନ୍ଦ୍ରବର୍ମା ! ସେଭଳି ଶକ୍ତି ଅନ୍ୟ କୌଣସି ଚିଜର ନାହିଁ । ମୁଁ ଯେତେବର୍ଷ ବଞ୍ଚିଲିଣି, କୌଣସି ଜୀବିତ ମଣିଷ ସେତେ ଦୀର୍ଘଦିନ ବଞ୍ଚିନାହିଁ । ପୁଣି ଥରେ ନୂଆ କରି ଜୀବନ ଆରମ୍ଭ କରିବ, ସେ ଆଶା ମୋର ଆଉ ନାହିଁ । ବର୍ତ୍ତମାନ ମୃତ୍ୟୁହିଁ ମୋ ପାଇଁ ଶ୍ରେୟ । ଏଭଳି ଅବସ୍ଥାରେ ବେଶିଦିନ ବଞ୍ଚିରହି ମୋର କେଉଁ ସୁଖ ? ମୋର ଚିନ୍ତା କେବଳ ତମ ପାଇଁ । ତମେ ବହୁ କଷ୍ଟ କରି ମୋର ସାହାଯ୍ୟ କରିଛ । ମୋ କଥାରେ ଥରେ ମଧ୍ୟ ସନ୍ଦେହ ବା ଦ୍ୱିଧା ପ୍ରକାଶ କରି ନାହଁ । ତୁମପରି ମଣିଷ ସହଜରେ ଦେଖାଯା'ନ୍ତି ନାହିଁ । କିନ୍ତୁ ମୁଁ ତମ ପାଇଁ କିଛି କରିପାରିଲି ନାହିଁ । ମୋର ଏହାହିଁ ଦୁଃଖ ।" କାପାଳିନୀ କହିଲା । ତା' ମୁହଁରେ ବିଷାଦର କାଳିମା ସ୍ପଷ୍ଟ ଥିଲା ।




କାପାଳନୀର କଥା ଶୁଣି ଚନ୍ଦ୍ରବର୍ମାଙ୍କ ହୃଦୟ ତା' ପ୍ରତି ସହାନୁଭୂତିରେ ଭରିଗଲା । କେତେଦିନ ଧରି କାପାଳନୀ ସେ ଯାଦୁ ଶଂଖ ପାଇବାକୁ ଚେଷ୍ଟା କରି ଚାଲିଥିଲା । ଆଜି ତାହା ହାତକୁ ଆସି ମଧ୍ୟ ଖସି ଚାଲିଗଲା । ପୁଣି ସେ ଚନ୍ଦ୍ରବର୍ମାଙ୍କୁ ତାଙ୍କ ରାଜ୍ୟ ଫେରି ପାଇବା ଦିଗରେ ସହାୟତା କରି ଋଣ ପରିଶୋଧ କରିବାକୁ ଇଚ୍ଛା କରୁଥିଲା । ତାହା ବି ହୋଇ ପାରିଲା ନାହିଁ । ତେଣୁ କାପାଳନୀ ଦୁଃଖରେ ଭାଙ୍ଗି ପଡିବା ସ୍ୱାଭାବିକ । ଚନ୍ଦ୍ରବର୍ମା ତା' ଦୁଃଖ ଠିକ୍ ଭାବରେ ଅନୁଭବ କଲେ ।

"କାପାଳନୀ! ମୋ ପାଇଁ ତମେ ଦୁଃଖ କର ନାହିଁ । ମୁଁ ଯେତେବେଳେ ନଦୀରେ ଲମ୍ଫି ଆସି ବଣ ଭିତରେ ପହଞ୍ଚିଲି, ସେତେବେଳେ ଚତୁର୍ଦ୍ଦିଗର ଅବସ୍ଥା ଦେଖି ପ୍ରାଣର ଆଶା ଛାଡ଼ି ଦେଇଥିଲି । ତୁମ ସହ ଦେଖା ହେବାରୁ ମୋ ଭିତରେ ନୂତନ ଆଶାର ସଞ୍ଚାର ହେଲା । ମୁଁ ଯେ ନୂତନ ଉତ୍ସାହରେ ଏତେ ଦିନ ପର୍ଯ୍ୟନ୍ତ ତିଷ୍ଠି ରହିଛି, ଏହା କ'ଣ କମ୍ କଥା ? ଛାଡ଼ । ବର୍ତ୍ତମାନ ଆମର କର୍ତ୍ତବ୍ୟ କ'ଣ, ତାହା ନିରୂପଣ କରିବା ?" ଚନ୍ଦ୍ରବର୍ମା କହିଲେ ।

"ଚନ୍ଦ୍ରବର୍ମା! ବର୍ତ୍ତମାନ ଆମକୁ ଅଲଗା ଅଲଗା ପନ୍ଥା ଧରିବାକୁ ହେବ । ମୁଁ ଆଉ କୁଆଡ଼େ ଯିବାକୁ ଚାହୁଁ ନାହିଁ । ଏହି ଅଞ୍ଚଳରେ କୌଣସି ଶାନ୍ତିପୂର୍ଣ୍ଣ ସ୍ଥାନଟିଏ ବାଛି ନେଇ ଶେଷ ଜୀବନ ବିତାଇବି ।" କାପାଳନୀ କହିଲା ।

"ବେଶ୍, ଉତ୍ତମ କଥା । କାଳ ନାଗର ସହାୟତାରେ ମୁଁ ତମପାଇଁ ତେବେ ଏ ପାହାଡ଼ ଶୀର୍ଷରେ ଗୋଟିଏ କୁଡିଆ ବନାଇ ଦେବି । କ'ଣ ପାହାଡ଼ ଉପରକୁ ଯାଇ ଦେଖିବା ?" ଚନ୍ଦ୍ରବର୍ମା ପଚାରିଲେ ।

କାପାଳନୀ ଏଥିରେ ସମ୍ମତି ଦେଲା । ଚନ୍ଦ୍ରବର୍ମା ଆଗେ ଆଗେ ପାହାଡ଼ ଉପରକୁ ଚାଲିଲେ । ତାଙ୍କୁ ଅନୁସରଣ କଲେ କାଳନାଗ ଓ କାପାଳନୀ ।

ସେମାନେ ଉପରେ ପହଞ୍ଚିବା ପରେ, ଯେଉଁ ସ୍ଥାନରୁ ସେମାନେ ଶଂଖକୁ ଟାଣି ଥିଲେ




ପକାଇ ଦେଇଥିଲେ, ଚନ୍ଦ୍ରବର୍ମା ସେଠାରୁ ତଳକୁ ଅନାଇଲେ । ହଠାତ୍ ତାଙ୍କ ମୁହଁରେ ବିସ୍ମୟ ଫୁଟି ଉଠିଲା । ସେ ଦେଖିଲେ ଶଂଖୁ କିଛି ତଳେ ଗୋଟିଏ ପଥର ଉପରେ ପଡ଼ିଛି । ତା' ମୁହଁ ତଳଆଡ଼କୁ ରହିଛି । ତା' ଦେହରେ ଜୀବନ ଅଛି ବୋଲି ମନେ ହେଉଥିଲା । ଚନ୍ଦ୍ରବର୍ମା ଏକ ଧ୍ୟାନରେ ତାକୁ କିଛି ସମୟ ପର୍ଯ୍ୟନ୍ତ ନିରୀକ୍ଷଣ କଲେ ।

ସେ ବୁଝିପାରିଲେ ନାହିଁ, ତାକୁ ସେହିପରି ଅବସ୍ଥାରେ ଛାଡିଦେଇ ଚାଲିଯିବେ ନା ତାକୁ ଖତମ୍ କରିବାର ବ୍ୟବସ୍ଥା କରିବେ । ଶଂଖୁ ତା' ଜୀବନକାଳ ଭିତରେ ଅସଂଖ୍ୟ ଲୋକଙ୍କର କ୍ଷତି କରିଛି । ନିଜର କ୍ଷମତା ବୃଦ୍ଧି ପାଇଁ ସେ କେତେ ଲୋକଙ୍କୁ ହତ୍ୟା କରିଛି, ପ୍ରତିହିଂସା ପାଇଁ କେତେ ଲୋକଙ୍କୁ କଲବଲ କରିଛି । ଏସବୁ ବିଷୟ ଚନ୍ଦ୍ରବର୍ମା କାପାଳିନୀ ପାଖରୁ ଶୁଣିଥିଲେ । ତେଣୁ ଶଂଖୁକୁ ଟାଣି ତଳେ ପକାଇଦେବା ଢଗରେ ତାଙ୍କୁ କୌଣସି ସଙ୍କୋଚ ଲାଗି ନଥିଲା । କିନ୍ତୁ ବର୍ତ୍ତମାନ ଶଂଖୁ ଅଚେତ ହୋଇ ପଡ଼ିଥିବା ବେଳେ ତାକୁ ମାରି ପକାଇବା ନିର୍ମମତା ହେବ । ଅନ୍ୟ ପକ୍ଷରେ, ତାକୁ ଛାଡ଼ିଦେଲେ ସେ ଯଦି ପୁଣି ବଞ୍ଚି ରହିବ, ତେବେ ନିର୍ମମ ଭାବରେ ସେ ପ୍ରତିହିଂସାପରାୟଣ ହୋଇ କ'ଣ କରିବ ସେକଥା କଳନା କରିବା ସହଜ ନୁହେଁ । ଚନ୍ଦ୍ରବର୍ମା ବଡ଼ ଦ୍ୱନ୍ଦ୍ୱରେ ପଡ଼ିଲେ ।

"କ'ଣ ଦେଖୁଛ ?" କାପାଳିନୀ ପଚାରିଲା ।

"ତାନ୍ତ୍ରିକ ଶଂଖୁ ହ୍ରଦ ଗର୍ଭରେ ପଡ଼ିଯାଇଛି ବୋଲି ଆମର ଧାରଣା ଭୁଲ । ସେ ଏଇଠାରେ ପଡିଛି ।" ଚନ୍ଦ୍ରବର୍ମା କହିଲେ । ସେ ଖଣ୍ଡିଏ ବଡ଼ ପଥର ଅପସାରଣ କରି ତା' ପାଖକୁ ଯିବାକୁ ଉଦ୍ୟତ ହେଲେ । କାପାଳିନୀ ତାଙ୍କୁ କିଛି କହିବାକୁ ଯାଉଛି, ଏତିକିବେଳେ ପଥର ଗୁଡିକ ଭାରସାମ୍ୟ ହରାଇଲେ । ଶଂଖୁ ଯେଉଁ ପଥର ଉପରେ ପଡ଼ିଥିଲା, ସେ ପଥର ତଳକୁ ଖସି ଚାଲିଗଲା— ଶଂଖୁ ସମେତ ।

ଚନ୍ଦ୍ରବର୍ମାଙ୍କ ଦ୍ୱନ୍ଦ୍ୱ ଦୂର ହେଲା । ଯାହା ହେବାର କଥା, ତାହା ବଳେ ବଳେ




ହୋଇଗଲା । ତଥାପି ସେ ଯେ ଖୁସି ହେଲେ, ତାହା ନୁହେଁ ।

ଏହାପରେ ସେ ଜଣହେଁ ପୁଣି ଉପରକୁ ଉଠିଲେ । ପାହାଡ଼ ଉପରେ ଯେଉଁଠାରେ ସକାଳ ପର୍ଯ୍ୟନ୍ତ ଶଂଖୁର ମନ୍ତ୍ର-ଗୃହ ଠିଆ ହୋଇଥିଲା, ସେହି ସ୍ଥାନ କାପାଳିନୀ ସକାଶେ ଗୃହ ନିର୍ମାଣ ନିମନ୍ତେ ଉପଯୁକ୍ତ ମନେ ହେଲା ।

"ଚନ୍ଦ୍ରବର୍ମା ! ତମକୁ ଭୋକ ଲଗିନାହିଁ ? ମୋତେ ତ ଭୀଷଣ ଭୋକ ଲଗିଲଣି !" କାପାଳିନୀ କହିଲା ।

"କିଛି ଫଳମୂଳ ସଂଗ୍ରହ କରିବା ନିମନ୍ତେ ତଳକୁ ଯିବାକୁ ପଡ଼ିବ ।" ଚନ୍ଦ୍ରବର୍ମା କୁଣ୍ଠିତ ସ୍ୱରରେ କହିଲେ ।

"ତମକୁ ଆଉ ସେଭଳି ପରିଶ୍ରମ କରିବାକୁ ପଡିବ ନାହିଁ ।" ଏହା କହି କାପାଳିନୀ କାଳନାଗକୁ ଡାକି କହିଲା, "ବର୍ତ୍ତମାନ ମୁଁ ତୋତେ ତୋ ନିଜ ରୂପ ଫେରାଇ ଦେବି । ଏଣିକି ତୁ ସ୍ୱାଧୀନ । ଯାହା ଇଚ୍ଛା ତାହା କରିପାରୁ ।"

ଏହା କହି କାପାଳିନୀ କାଳନାଗ ଉପରେ କିଛି ମନ୍ତ୍ର ପାଣି ଛିଟିକାଇ ଦେଲା । ଗୁହୁଁ ଗୁହୁଁ କାଳନାଗ ଗୋଟିଏ ବଳବାନ୍ ଯୁବକରେ ପରିଣତ ହେଲା । ସେ କାପାଳିନୀକୁ ଜୁହାର ହୋଇ କହିଲା, "ତମର ଦୟା ପାଇଁ ଧନ୍ୟବାଦ । ସ୍ୱାଧୀନତା ପାଇବା ସତ୍ତ୍ୱେ ମୁଁ ତମର ଅନୁଗତ ହୋଇ ରହିବି ।"

ଏହା ପରେ ସେ ଯୁବକ ଚନ୍ଦ୍ରବର୍ମାଙ୍କୁ ଅଭିବାଦନ ଜଣାଇ କହିଲା, "ଯୁବରାଜ ! ତୁମ ପ୍ରତି ମୁଁ ବହୁତ କୃତଜ୍ଞ ।"

ଚନ୍ଦ୍ରବର୍ମା କହିଲେ, "ଯୁବକ, ତୁମର ଅସଲ ନାମ କ'ଣ ମୁଁ ଜାଣେନା । ମୋର ଜଣେ ଶତ୍ରୁ ଅଛି । ତା' ନାମ ସର୍ପକେତୁ । ମୁଁ ତୁମକୁ କାଳକେତୁ ଡାକିବି ବୋଲି ଭାବୁଛି ।"

"ବେଶ୍, ଯୁବରାଜ, ବେଶ । ମୋତେ କାଳକେତୁ ବୋଲିହିଁ ଡାକନ୍ତୁ । ଦିନେ ହୁଏତ ଆପଣଙ୍କ ଶତ୍ରୁକୁ ଦମନ କରିବା ବାଟରେ ମୁଁ ଆପଣଙ୍କ ସହାୟତା କରିବି ।"

ଏହା କହି କାଳକେତୁ ବିଜୁଳି ବେଗରେ ପାହାଡ଼ ତଳକୁ ଅବତରଣ କରିଗଲା ।



ଅନେକ ଦିନ ପରେ ମଣିଷ ରୂପେ ବିଚରଣ କରିବାର ସ୍ୱାଧୀନତା ପାଇ ତା' ଆନନ୍ଦ କହିଲେ ନ ସରେ । ଅଳ୍ପ ସମୟ ଭିତରେ ସେ ଅନେକ ଗୁଡ଼ିଏ ସୁସ୍ୱାଦୁ ଫଳମୂଳ ଧରି ଆସିଲା । ପାହାଡ଼ ଉପରେହିଁ ଥିଲା ସ୍ୱଚ୍ଛ ଝରଣା । ସେମାନେ କ୍ଷୁଧା ତୃଷ୍ଣା ନିବାରଣ କରି ଆନନ୍ଦିତ ହେଲେ ।

କାଳକେତୁ ଓ ଚନ୍ଦ୍ରବର୍ମା ଲଗିପଡ଼ି ଗୋଟିଏ କୁଡ଼ିଆ ନିର୍ମାଣ କଲେ ।

"ଯୁବରାଜ ! ଦେଖନ୍ତୁ ବିଡ଼ମ୍ବନା ! ଆପଣ କାହିଁ ବିରାଟ ରାଜ-ପ୍ରାସାଦରେ ରହିବା ଲୋକ । ଆଜି ରାତି ଯାପନ ନିମନ୍ତେ ଆପଣଙ୍କୁ ନିଜ ହାତରେ କୁଡ଼ିଆଟିଏ ନିର୍ମାଣ କରିବାକୁ ପଡ଼ୁଛି ! କାଳକେତୁ କହିଲା ! ଚନ୍ଦ୍ରବର୍ମା ହସିଲେ ଓ କହିଲେ, "ସବୁ ପରିସ୍ଥିତିରୁ ମଣିଷର ବହୁତ କିଛି ଶିଖିବାର ଥାଏ ।"

ରାତିରେ ଭଲହେଁ କୁଡ଼ିଆରେ ଶୋଇଲେ କିନ୍ତୁ ଚନ୍ଦ୍ରବର୍ମାଙ୍କୁ ନିଦ ହେଲା ନାହିଁ । ସେ ଭାବୁଥିଲେ, ତାଙ୍କର ସୁନ୍ଦର ରାଜପ୍ରାସାଦ ଓ ଦୁର୍ଗ ବର୍ତ୍ତମାନ ଦୁଷ୍ଟ ସର୍ପକେତୁ ମାଡ଼ି ବସିଛି ! ସେ କିପରି ସେଠାରେ ପହଞ୍ଚିବେ ? କିପରି ବା ତା' କବଳରୁ ନିଜ ରାଜ୍ୟ ମୁକ୍ତ କରିବେ ?

ଏସବୁ ଭାବୁଁ ଭାବୁଁ ସେ କୁଡ଼ିଆ ବାହାରକୁ ଚାଲି ଆସିଲେ । ମୁକ୍ତ ଆକାଶ ତଳେ ସେ ଏଣେତେଣେ ଦୃଷ୍ଟିପାତ କରୁଥା'ନ୍ତି ଓ ନାନା କଥା ଭାବୁଥାନ୍ତି । କେତେବେଳେ କାଳକେତୁ ମଧ୍ୟ ଉଠି ଆସିଥାଏ ।

"ଯୁବରାଜ ! ଆପଣଙ୍କ ଚିନ୍ତାର କାରଣ ମୁଁ ଅନୁମାନ କରି ପାରୁଛି । ଆପଣଙ୍କୁ ମୁଁ ବଣ ଭିତରୁ ବାହାରି ଯିବାର ବାଟ ବତାଇ ଦେଇପାରେଁ । କିନ୍ତୁ ମୋର ଦୁଃଖ ହେଲା, ମୁଁ ଆପଣଙ୍କ ସହ ଯାଇ ପାରିବି ନାହିଁ । କାରଣ କାପାଳିନୀ ଅତ୍ୟନ୍ତ ବୃଦ୍ଧା । ଆଉ ବେଶିଦିନ ସେ ବଞ୍ଚିବ, ସେ ଆଶା ନାହିଁ । ଏଭଳି ଅବସ୍ଥାରେ ତାକୁ ଛାଡ଼ିଦେଇ ଯିବି କିପରି ?" କାଳକେତୁ କହିଲା ।

"ତୁମେ ଠିକ୍ କହୁଛ । କାପାଳିନୀକୁ ଏଭଳି ଅବସ୍ଥାରେ ଏ ଜନଶୂନ୍ୟ ଅରଣ୍ୟ

ଭିତରେ ଏକାକୀ ଛାଡ଼ିଦେଇ ଯିବା ଠିକ୍ ହେବ ନାହିଁ । ସେ ଯେତେହେଲେ ବି ତୁମ ଉପରେ ବିଶ୍ୱାସ ରଖିଛି ।" ଚନ୍ଦ୍ରବର୍ମା କହିଲେ । ତା'ପରେ ସେ ବଣ ଭିତରୁ ଜନପଦ ଅଭିମୁଖେ ବାହାରି ଯିବାର ଉପାୟ ସବିଶେଷ କାଳକେତୁ ନିକଟରୁ ଜାଣିନେଲେ । ନିଜ କର୍ମ ଉପରେ ସବୁ ଛାଡ଼ି ଦେଇ ନିଜ ରାଜ୍ୟକୁ ଫେରିଯିବାକୁ ସେ ମନସ୍ଥ କଲେ ।

ସକାଳ ହେବା ମାତ୍ରେ ସେ ଯାଇ ସରୋବରରେ ସ୍ନାନ କଲେ ଓ ଆସି କାପାଳିନୀକୁ ନିଜ ଯୋଜନା ବିଷୟ କହିଲେ । କାପାଳିନୀ ତାଙ୍କୁ କିଛି ସାହାଯ୍ୟ କରି ପାରୁ ନଥିବାରୁ ପୁନରାୟ ମନସ୍ତାପ କଲା ଓ କହିଲା, "ଚନ୍ଦ୍ରବର୍ମା ! ମୋର ବିଶ୍ୱାସ ତମେ ଶତ୍ରୁ ଦମନ କରି ନିଜ ରାଜ୍ୟ ଓ ଦୁର୍ଗ ଉଦ୍ଧାର କରିବ ।"

ଚନ୍ଦ୍ରବର୍ମା କାଳକେତୁର ନିର୍ଦ୍ଦେଶ ଅନୁସାରେ ଉତ୍ତର ଦିଗ ଅଭିମୁଖେ ଯାତ୍ରା କଲେ । ସାରା ଦିନ ଚାଲିବା ପରେ ସେ କ୍ଲାନ୍ତ ହୋଇ ଗୋଟିଏ ଗଛ ତଳେ ମାଟି ସମତଳ କରି ବିଶ୍ରାମର ଉଦ୍ୟମ କରୁଛନ୍ତି, ଅଦୂରରୁ ଶୁଭିଲା ଏକ ବିକଟ ରଡ଼ି । ସେ ଅନାଇ ଦେଖିଲେ, ଗୋଟିଏ ଢ଼ିପ ଉପରୁ ଅବତରଣ କରି ଆସୁଛି ଭୀଷଣ ଡାହାଣ କୁକୁରଟିଏ । ସେ ପଛ ଗୋଡ଼ରେ ଠିଆ ହୋଇ ଆଗ ଗୋଡ଼ର ଭୟଙ୍କର ନଖମାନ ବାହାର କରି ତାଙ୍କ ଆଡ଼କୁ ଝପଟି ଆସୁଥାଏ ।

"ଏଇଟା କଦାପି ସାଧାରଣ କୁକୁର ନୁହେଁ; କୌଣସି ରାକ୍ଷସ ।" ଚନ୍ଦ୍ରବର୍ମା ଭାବିଲେ ।

ହଠାତ୍ ତାଙ୍କ ଆଖିରେ ପଡ଼ିଲା ଖଣ୍ଡିଏ ଜଂଜିର । ସେ ବଣ ଭିତରକୁ ଜଂଜିର କିପରି ଆସିଲା ସେ ବୁଝିପାରିଲେ ନାହିଁ । କିନ୍ତୁ ସେ ଗୋଟିଏ ହାତରେ ତଲୱାର୍ ଓ ଅନ୍ୟ ହାତରେ ଜଂଜିର ଧରି ଠିଆ ହୋଇ ରହିଲେ । ଡାହାଣ ଗତି ବଢ଼ାଇ ମାଡ଼ି ଆସୁଥାଏ ।

(କ୍ରମଶଃ)





# ଯମଙ୍କ ମହିଷ

ନିଶା ଗରଜୁଥାଏ । ଭୁହାକୁ ଭୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ଯେ ଏଭଳି ପରିଶ୍ରମ କରୁଛ, ଏଥିରେ ନିଶ୍ଚୟ ତମର କିଛି ବିଶେଷ ସ୍ୱାର୍ଥ ନିହିତ ଅଛି । ତେବେ କଥା କ'ଣ କି

## ବେତାଳ କଥା



ଅନେକ ସମୟରେ ଅଭିଷ୍ଟ ସ୍ୱାର୍ଥ ସିଦ୍ଧିର ସୁଯୋଗ ଆସିଗଲେ ମଧ୍ୟ ଲୋକେ ସେ ସୁଯୋଗ ଗ୍ରହଣ କରନ୍ତି ନାହିଁ । କୁମାର ମିଶ୍ର ନାମକ ଜଣେ ବୈଦ୍ୟର କାହାଣୀ କହୁଛି ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା: ବିନ୍ଧ୍ୟାଚଳ ରାଜ୍ୟର ଗୋଟିଏ ଗ୍ରାମରେ ସଦାନନ୍ଦ ମିଶ୍ର ନାମକ ଜଣେ ବୈଦ୍ୟ ଥିଲେ । ସେ ଅତ୍ୟନ୍ତ ଭଲ ମଣିଷ ଥିଲେ । ତାଙ୍କ ଚିକିତ୍ସାରେ ରୋଗୀମାନେ ଖୁବ୍ ଉପକୃତ ହେଉଥିଲେ । କିନ୍ତୁ ସେ ବହୁତ କଷ୍ଟରେ ଚଳୁଥିଲେ । କାରଣ ସେ ରାଜ୍ୟର ଲୋକେ ଖୁବ୍ ଗରିବ ଥିବାରୁ ତାଙ୍କୁ ଯଥେଷ୍ଟ ପାରିଶ୍ରମିକ ଦେଇପାରୁ ନଥିଲେ । ସେ ମଧ୍ୟ ରୋଗୀମାନଙ୍କୁ ତାଙ୍କ ନିଜ ତରଫରୁ କିଛି ମାଗିପାରୁ ନଥିଲେ ।

କେହି କେହି ଶୁଭେଚ୍ଛୁ ତାଙ୍କୁ ପରାମର୍ଶ ଦେଇ କହୁଥିଲେ: "ତମେ ରାଜାଙ୍କ ପାଖକୁ ଯାଅ । ସେ ତମକୁ ସମ୍ମାନ ଓ ଅର୍ଥ ଦେବେ । ଶେଷ ଜୀବନ ସୁଖରେ ରହିବ ।"

ସଦାନନ୍ଦ ଏସବୁ ଶୁଣି ଚୁପ୍ ରହନ୍ତି । କଥା ହେଲା, ତାଙ୍କର ଆୟୁର୍ବେଦରେ କୌଣସି ଉପାଧି ନଥିଲା । କାରଣ ସେ କୌଣସି ଅନୁଷ୍ଠାନରୁ ବା କୌଣସି ଗୁରୁଠାରୁ ଚିକିତ୍ସା-ବିଦ୍ୟା ଶିଖି ନଥିଲେ । ତାଙ୍କ ବାପା ଜଣେ ସାଧାରଣ କବିରାଜ ଥିଲେ । ତାଙ୍କଠାରୁ ସେ ନିଜେ ଯେତିକି ଯାହା ଶିଖିଥିଲେ । ପୁଣି ନିଜ ଆନ୍ତରିକତା ଏବଂ ଅଭିଜ୍ଞତା ଥିଲା ତାଙ୍କର ସବୁଠାରୁ ବଡ଼ ସମ୍ପଦ । ରାଜାଙ୍କ ପାଖରେ ବଡ଼ ବଡ଼ ଉପାଧି-ଧାରୀ କବିରାଜମାନେ ଥା'ନ୍ତି । ରାଜା ତାଙ୍କୁ କାହିଁକି ପାସଙ୍ଗରେ ପକାଇବେ ?

ଥରେ ସଦାନନ୍ଦ ଅସୁସ୍ଥ ହୋଇ ଶଯ୍ୟାଶାୟୀ ହେଲେ । ଜ୍ୱରର ଲକ୍ଷଣରୁ ସେ ବୁଝିପାରିଲେ କି ତାଙ୍କ ଶେଷ ସମୟ ଉପସ୍ଥିତ । ସେ କୁମାରଙ୍କୁ ପାଖକୁ ଡାକି କହିଲେ, "ପୁଅ! ମୋର ଯିବାବେଳ ହୋଇଗଲା । ଦୁଃଖର କଥା, ତୋ ପାଇଁ କିଛି ସଞ୍ଚି ପାରି ନାହିଁ । ତେବେ ଗାଁ ଲୋକେ ଆମକୁ ଶ୍ରଦ୍ଧା କରନ୍ତି । ତୁ ତ ଅଳ୍ପ ପାଠ ପଢ଼ିଛୁ । ମୋ ମୃତ୍ୟୁ ପରେ

ରୁ ଏଠାରେ ଗୋଟିଏ ଚିକିତ୍ସାଳୟ ଖୋଲି ପିଲଙ୍କୁ ପ୍ରାଥମିକ ପାଠ ପଢ଼ା । ସେଥିରେ କୌଣସି ମତେ ଚଳିଯିବୁ ।"

କୁମାର କହିଲା, "ବାପା! ତୁମେ ମୃତ୍ୟୁ କଥା କାହିଁକି ଭାବୁଛ? ରୋଗ କାହାର ନ ହୁଏ? ତମେ ସୁସ୍ଥ ହେବା ପରେ ଏସବୁ ବିଷୟ ଆଲୋଚନା କରିବା ।"

"ନା, ପୁଅ । ମୁଁ ସୁସ୍ଥ ହେବାର ସମ୍ଭାବନା ନାହିଁ । ସେପରି ଲକ୍ଷଣ ଦେଖିଛି ବୋଲି ତୋତେ କହୁଛି ।" ସଦାନନ୍ଦ କହିଲେ ।

"ବାପା! ତୁମ ପାଖରେ ମୁଁ ମିଛ ପ୍ରତିଶ୍ରୁତି ଦେବିନାହିଁ । ମୁଁ ଚିକିତ୍ସାଳୟ କରିବି ନାହିଁ । ତୁମ ଅନ୍ତେ ତୁମରି ଭଳି ବୈଦ୍ୟ ହୋଇ ଜୀବିକା ନିର୍ବାହ କରିବି ।" କୁମାର କହିଲା ।

"ପୁଅ! ମୁଁ ଜାଣେ ତୁ ବୁଦ୍ଧିମାନ ଓ ବିବେକୀ । ମୋଠୁଁ ଯେତିକି ଚିକିତ୍ସା-ବିଦ୍ୟା ଶିଖିଛୁ, ସେଥିରେ କୌଣସି ମତେ ଚିକିତ୍ସା କାର୍ଯ୍ୟ କରି ପାରିବୁ, କିନ୍ତୁ ତାହା ଠିକ୍ ହେବ ନାହିଁ । ଯଦି ଚିକିତ୍ସାଳୟ ଖୋଲିବାକୁ ମନ କରୁନାହିଁ, ତେବେ କୃଷିବାସ କରିପାରୁ ।" ସଦାନନ୍ଦ କହିଲେ ।

"ବାପା! ମୁଁ ଚିକିତ୍ସା-ବିଦ୍ୟାର ଜାଣେ କ'ଣ? ସେତିକି ଜ୍ଞାନ ନେଇ ମୁଁ ବୈଦ୍ୟ ହେବି ନାହିଁ । ମୁଁ ଯାଇ ମହେନ୍ଦ୍ର ଯୋଗୀଙ୍କ ଆଶ୍ରମରେ ଶିକ୍ଷାଲାଭ କରିବି । ତା'ପରେ ବୈଦ୍ୟ ବ୍ୟବସାୟ କରିବି ।" କୁମାର ଉତ୍ତର ଦେଲା ।



ଏଥର ସଦାନନ୍ଦ ଆଉ କିଛି କହିଲେ ନାହିଁ । ଜଣାଗଲା, ସେ ଅତ୍ୟନ୍ତ ପ୍ରସନ୍ନ ହେଲେ । ଏହାର ଦୁଇଦିନ ପରେ ସଦାନନ୍ଦ ମୃତ୍ୟୁ ବରଣ କଲେ ।

ଗାଁ ଲୋକେ ସବୁ ଦାୟିତ୍ୱ ନେଇ ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା କଲେ । କୁମାରକୁ ସେମାନେ ସାହାଯ୍ୟ କରିବାର ଭରସା ଦେଲେ । କୁମାର ସେମାନଙ୍କ ଶ୍ରଦ୍ଧାରେ ଅଭିଭୂତ ହେଲା ଓ ଘରବାଡି ସେମାନଙ୍କ ଜିମା ଦେଇ ମହେନ୍ଦ୍ର ଯୋଗୀଙ୍କ ଆଶ୍ରମ ଅଭିମୁଖେ ଚାଲିଲା ।

ମହେନ୍ଦ୍ର ଯୋଗୀଙ୍କ ପାଖରେ ଅନେକ ଶିଷ୍ୟ ଥିଲେ । କିଏ ଯୋଗ ଶିକ୍ଷା କରୁଥିଲା ତ କିଏ ଜ୍ୟୋତିଷ ବିଦ୍ୟା, କିଏ ବା ଆୟୁର୍ବେଦ



ଶିକ୍ଷା କରୁଥିଲା । ସେଠାରୁ ଯେଉଁମାନେ ବିଦ୍ୟାଳୟ ସମ୍ପୂର୍ଣ୍ଣ କରି ଉତ୍ତୀର୍ଣ୍ଣ ହେଉଥିଲେ, ସମାଜରେ ସେମାନଙ୍କ ପ୍ରତିଷ୍ଠା ଲାଭ ସହଜ ହେଉଥିଲା ।

କୁମାର ମହେନ୍ଦ୍ର ଯୋଗୀଙ୍କୁ ଆୟୁର୍ବେଦ ଶିକ୍ଷା ବିଷୟରେ ନିଜ ଆଗ୍ରହ କଥା କହିଲା । କୁମାରକୁ କେତୋଟି ପ୍ରଶ୍ନ ପଚାରି ଓ ବାଳକର ଆନ୍ତରିକତା ଦେଖି ସେ ତାକୁ ଶିଷ୍ୟ ରୂପେ ଗ୍ରହଣ କରିନେଲେ ।

କୁମାର ଗଭୀର ମନଯୋଗ ସହକାରେ ଆୟୁର୍ବେଦ ଶିକ୍ଷା କଲା । ତା' ନିଷ୍ଠା ଓ ବ୍ୟବହାର ଯୋଗୁଁ ମହେନ୍ଦ୍ର ଯୋଗୀ ତାକୁ କ୍ରମେ ନିଜ ପୁଅ ଭଳି ସ୍ନେହ କରିବାକୁ ଲାଗିଲେ ।

କୁମାରର ବିଦ୍ୟା ସମାପ୍ତ ହେଲା । ସେତେବେଳକୁ ଗୁରୁ ନୂଆ ଶିଷ୍ୟ ଗ୍ରହଣ କରୁ ନଥିଲେ । ଦିନେ ସେ ଘୋଷଣା କଲେ : ସମସ୍ତଙ୍କର ବିଦ୍ୟା ସମାପ୍ତ ହୋଇଛି । ଏଣିକି ସେମାନେ ଘରକୁ ଯାଇ ପାରନ୍ତି । ଶେଷ ଜୀବନ ସେ ନୀରବରେ ତପସ୍ୟାରତ ରହି ବିତାଇବେ ।

ଜଣ ଜଣ କରି ଶିଷ୍ୟମାନେ ଚାଲି ଯିବାକୁ ଲାଗିଲେ । ଦିନେ ମହେନ୍ଦ୍ର ଯୋଗୀ କୁମାରକୁ ପାଖକୁ ଡାକି କହିଲେ, "ବାପା! ତୁ ସଫଳ ଚିକିତ୍ସକ ହେବୁ, ସନ୍ଦେହ ନାହିଁ । ଚାହିଁଲେ ବହୁତ ଉପାର୍ଜନ ବି କରି ପାରିବୁ । ତେବେ ଗରିବ ଲୋକଙ୍କ ଚିକିତ୍ସାରେ ହେଳା କରିବୁ ନାହିଁ । ଯଦି ମୋଠୁଁ ଆଉ କିଛି ଚାହୁଁ, କହ ।"

"ଗୁରୁଦେବ! ମୃତ୍ୟୁକୁ କିପରି ଦୂର କରି ହେବ?" କୁମାର କହିଲା ।

"ବାପା! ମୃତ୍ୟୁକୁ ଦୂର କରିବାକୁ ହେଲେ ମଣିଷକୁ ଦେବତା ହେବାକୁ ପଡ଼ିବ । ତାହା ସହଜ ନୁହେଁ କି ସେ ବିଷୟରେ କୌଣସି ଉପାୟ କହିବା ମୋ ସାଧ୍ୟରେ ନାହିଁ । ତେବେ ତୋତେ ଗୋଟିଏ ବର ଦେଉଛି । ରୋଗୀ ପାଖକୁ ପ୍ରଥମେ ଗଲାବେଳେ ମୋତେ ସ୍ମରଣ କରି ତା' ମୁଣ୍ଡ ଉପରକୁ ଚାହିଁବୁ । ମୁହୂର୍ତ୍ତକ ପାଇଁ ଯଦି ତୋ ଆଖିରେ ଗୋଟିଏ ମହିଷର ରୂପ ଦେଖାଯିବ, ତେବେ ବୁଝିବୁ ଯେ ରୋଗୀର ମୃତ୍ୟୁ ଅନିବାର୍ଯ୍ୟ ।"

"ଗୁରୁଦେବ! ଅନ୍ତତଃ ଥରୁଟିଏ ମଧ୍ୟ ସେ ମହିଷକୁ ମୁଁ ତଡ଼ି ପାରିବି ନାହିଁ?"

ମହେନ୍ଦ୍ର ଯୋଗୀ କିଛି ସମୟ ଚୁପ୍ ରହି କହିଲେ, "ଆଚ୍ଛା ବାପା, ତୋତେ ଏହି ବର ଦେଲି, ମାତ୍ର ଥରୁଟିଏ ଯେ କୌଣସି ଲୋକର ମୃତ୍ୟୁ ରୋକି ପାରିବୁ। ମହିଷକୁ ଦେଖିବା ମାତ୍ରେ ତିନିଥର ଦୁର୍ଗା ନାମ ଉଚ୍ଚାରଣ କଲେ ମହିଷ ପଳାଇବ; କିନ୍ତୁ କାହା ଭାଗ୍ୟରେ ହସ୍ତକ୍ଷେପ କଲେ ନିଜ ଭାଗ୍ୟ ବଦଳିଯାଏ। ତୁ ସେପରି କଲେ ଆୟୁର୍ବେଦ ସମ୍ପୂର୍ଣ୍ଣ ଭୁଲିଯିବୁ।"

କୁମାର ଆଉ କିଛି କହିଲା ନାହିଁ। ସେଠାରୁ ବିଦାୟ ନେଇ ଚାଲିଗଲା। ଗାଁ ଲୋକେ ତାକୁ ପାଇ ଅଶେଷ ଆନନ୍ଦିତ ହେଲେ। ସେ ଚିକିତ୍ସାରେ ଅତି ଶୀଘ୍ର ଖ୍ୟାତି ଲାଭ କଲା। ଯେଉଁଠି ସେ ମହିଷ ଦେଖୁଥାଏ, ସେଠାରେ ସେ ଚିକିତ୍ସା-ଦାୟିତ୍ୱ ହାତକୁ ନେଉ ନଥାଏ। କୌଣସି ନା କୌଣସି ଆଳରେ ସେଭଳି ରୋଗୀଙ୍କୁ ଏଡ଼ାଇ ଯାଉଥାଏ। ଯାହାର ଚିକିତ୍ସା ସେ କରୁଥାଏ, ସେ ରୋଗୀ ଭଲ ହୋଇଯାଉଥାଏ। ଫଳରେ ଚାରିଆଡ଼େ ରଟିଗଲା କି କୁମାର କବିରାଜ ଯାହାକୁ ଚିକିତ୍ସା କରନ୍ତି, ସିଏ ମରେ ନାହିଁ!

ଥରେ ବିନ୍ଧ୍ୟାଚଳ ରାଜ୍ୟର ସେ ମୁଲକରେ ଗୋଟିଏ ସଂକ୍ରାମକ ରୋଗ ଦେଖାଦେଲା। କୁମାର ଦିନରାତି ଲାଗି ଲୋକଙ୍କ ରୋଗ ଉପଶମ କରୁଥାଏ। ସେତିକି ବେଳେ ବିନ୍ଧ୍ୟାଚଳକୁ ଲାଗିଥିବା ସୁନ୍ଦରପୁର ନାମକ ରାଜ୍ୟରୁ ଦୂତ ଆସି ତାକୁ କହିଲା, "ବୈଦ୍ୟବର! ଆମ





ରାଜାଙ୍କ ଏକମାତ୍ର କନ୍ୟାଙ୍କ ଜୀବନ ସଙ୍କଟାପନ୍ନ । ରାଜା ଆପଣଙ୍କ ଖ୍ୟାତି ଶୁଣିଛନ୍ତି ।"

ସେ ପର୍ଯ୍ୟନ୍ତ କୁମାର କୌଣସି ରାଜ-ଦରବାରରୁ ଡାକରା ପାଇ ନଥିଲା । ମନରେ ଥିବା ବହୁ ଧନର ଆକାଂକ୍ଷା ହଠାତ୍ ତୀବ୍ର ହୋଇ ଉଠିଲା । ସେ ଯିବାକୁ ବାହାରିଲା ।

ସେ ଅଞ୍ଚଳର ଲୋକେ ଆସି ମିନତି କରି କହିଲେ, "ବୈଦ୍ୟରାଜ! ଏ ସଂକ୍ରାମକ ରୋଗ ବ୍ୟାପିଥିବା ବେଳେ ଆପଣ ଦୂରକୁ ଚାଲିଗଲେ ଆମେ କରିବୁଁ କ'ଣ?"

"ବ୍ୟସ୍ତ ହୁଅନାହିଁ । ମୁଁ ସତ୍ୱର ଫେରି ଆସିବି ।" ଏହା କହି କୁମାର ସୁନ୍ଦରପୁର ଗଲା ।

ରାଜପ୍ରାସାଦରେ କୁମାରକୁ ବିଶେଷ ଅଭ୍ୟର୍ଥନା ଦିଆଗଲା । ରାଜା କହିଲେ, "ଭଦ୍ରେ! ଆପଣଙ୍କ ଖ୍ୟାତି ଶୁଣି ଡକାଇଲି । ମୋ କନ୍ୟାକୁ ଭଲ କରିଦେଲେ ମୁଁ ଆପଣଙ୍କ ପାଇଁ ଗୋଟିଏ ପ୍ରାସାଦ ଛାଡ଼ି ଦେବି । ଦାସଦାସୀ ଖଞ୍ଜି ଦେବି । ତା'ଛଡ଼ା ଦେବି ବିପୁଳ ପରିମାଣ ସ୍ୱର୍ଣ୍ଣ ମୁଦ୍ରା ।"

କୁମାର ରାଜକନ୍ୟାଙ୍କ କୋଠରୀ ଭିତରେ ପଶିଯାଇ ଦେଖିଦେଲା ମହିଷର ରୂପ । ପ୍ରଥମେ ସେ ଦୁଃଖିତ ହେଲା । ତା'ପରେ ସ୍ଥିର କଲା ତିନିବାର ଦୁର୍ଗାନାମ ସ୍ମରଣ କରି ମହିଷ ତଡ଼ି ଦେବ ।

ସେତିକି ବେଳେ ରାଜା ତା' କାନ ପାଖରେ କହିଲେ, "ବାବୁ! ଏ କନ୍ୟା ମୋର ଏକମାତ୍ର ସନ୍ତାନ । ସମସ୍ତେ ହାଲ୍ ଛାଡି ଦେଇଛନ୍ତି । ତମେ ଯଦି ଏହାକୁ ବଞ୍ଚାଇ ପାରିବ, ତେବେ ତମକୁ ବରଂ ମୋ ଜାମାତା ରୂପେ ବରଣ କରିବି । ତମେ ହେବ ମୋ ପରେ ଏ ରାଜ୍ୟର ରାଜା ।"

"ମହାରାଜ! କ୍ଷମା କରନ୍ତୁ । ଏହାଙ୍କୁ ରକ୍ଷା କରିବା ମୋର ସାଧ୍ୟାତୀତ!" ହଠାତ୍ ଗମ୍ଭୀର ହୋଇ କୁମାର କହିଲା ।

"ବାବୁ! ସେପରି କୁହନା । ଚେଷ୍ଟା କର ।" ରାଜା ବ୍ୟାକୁଳ ଭାବରେ କହିଲେ ।

"କ୍ଷମା କରନ୍ତୁ । ଚେଷ୍ଟା କରି ଲାଭ ନାହିଁ ।" ଏହା କହି କୁମାର ତତ୍ପର ବେଗରେ ବାହାରି

ଗଲା । ତା'ପରେ ସେ ସିଧା ଫେରି ଆସିଲା ତାଙ୍କ ଗ୍ରାମକୁ ଏବଂ ସାଧାରଣ ରୋଗୀମାନଙ୍କ ସେବାରେ ନିଜକୁ ନିୟୋଗ କଲା ।

ବେତାଳ କ୍ଷଣକ ସକାଶେ ଚୁପ୍ ରହି ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା ! କୁମାର କାହିଁକି ଏଭଳି ନିର୍ବୋଧତା କଲା ? କେତେ ଦିନରୁ ଧନୀ ହେବା ନିମନ୍ତେ ତା' ମନରେ ବାସନା ଥିଲା । ଅଥଚ ରାଜା ହେବାର ସୁଯୋଗ ପାଇ ତାହା ସେ ପାଦରେ ଠେଲି ଦେଲା କାହିଁକି ? ତା'ର ମସ୍ତିଷ୍କ-ବିକୃତି ଘଟିଲା କି ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ସୁଖରେ ରହିବା ସକାଶେ କୁମାର ଯେ ଅନେକ ଦିନରୁ ସ୍ୱପ୍ନ ଦେଖୁଥିଲା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ମଣିଷ କେବଳ ଗୋଟିଏ ଇଚ୍ଛା ବା ଉଦ୍ଦେଶ୍ୟ ଦ୍ୱାରା ଚାଳିତ ହୁଏ ନାହିଁ । ସାଧାରଣ ଲୋକ ପାଇଁ ଅର୍ଥ, କ୍ଷମତା ବା ରାଜସିଂହାସନ ବହୁତ ବଡ଼ କଥା ହୋଇପାରେ, କିନ୍ତୁ ଯିଏ ଆଦର୍ଶବାଦୀ ବା ବିବେକୀ, ତା' ପାଇଁ ତା' ଆଦର୍ଶ ଓ ବିବେକ ବଡ଼ କଥା । ସୁଖ ସକାଶେ କୁମାରର ଯେତିକି ଆଗ୍ରହ ଥିଲା, ଜନସାଧାରଣଙ୍କ ସେବା ପାଇଁ ତା'ର ଆଗ୍ରହ ଓ ଗୁରୁଙ୍କ ଉପଦେଶ ତାହା ଅପେକ୍ଷା ଅଧିକ ମୂଲ୍ୟବାନ ବୋଲି ସେ ମନେ କଲା । ବୈଦ୍ୟ ଭାବରେ ସେ ବହୁ ଲୋକଙ୍କର ଉପକାର କରୁଥିଲା । ସେଥିରୁ ବିରତ ହେବା ତା' ପକ୍ଷରେ ଅବିବେକତା ହୋଇଥାନ୍ତା ।"

ସର୍ତ୍ତ ଅନୁସାରେ ରାଜା ନୀରବରେ ବେତାଳକୁ ଯଥା ସ୍ଥାନରେ ପହଞ୍ଚାଇଦେବା କଥା । ତାଙ୍କ ମୌନ ଭଙ୍ଗ ହେବାରୁ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



# ଲକ୍ଷ୍ୟ ଭେଦ

ସୁକୁମାର ଦିନେ ଅନ୍ୟ ମନସ୍କ ଭାବରେ ବୁଲିଁ ବୁଲିଁ ବଣ ଭିତରକୁ ପଶି ଆସିଥିଲା । ହଠାତ୍ ସେ ଜଣେ ସାଧୁଙ୍କୁ ଭେଟିଲା ।

"ଯୁବକ ! ତମେ କ'ଣ ହିଂସ୍ର ଜନ୍ତୁଙ୍କ କବଳରୁ ଆତ୍ମରକ୍ଷାର ମନ୍ତ୍ର ଜାଣ ?"

"ମହାଶୟ ! ବାଘ ମୋତେ ଖାଇଗଲେ ଭଲ ହେବ । ଜୀବନରେ କିଛି କରି ପାରିଲି ନାହିଁ । ମୋର ଜଣେ ବନ୍ଧୁ ଲକ୍ଷପତି ହେଲାଣି; ଜଣେ ସହପାଠୀ ରାଜାଙ୍କ ଅମାତ୍ୟ ହୋଇଛି ! ଆଉ ଜଣେ ଭଲ ଚିକିତ୍ସକ । ଆଜି ହଠାତ୍ ମୁଁ ଚେଇଁ ଉଠି ଦେଖିଲି, ମୁଁ କିଛି କରି ପାରି ନାହିଁ । ତେଣୁ ଜୀବନ ପ୍ରତି ମୋର ବିତୃଷ୍ଣା ଆସି ଯାଇଛି ।" ସୁକୁମାର କହିଲା ।

ତଳେ ଖଣ୍ଡିଏ ପୁରୁଣା ଧନୁ ପଡ଼ିଥିଲା । ସାଧୁ ସେ ଗୋଟିକ ଉଠାଇ ନେଇ ତାକୁ ଦେଲେ ଓ କହିଲେ, "ତୀର ମାରିଲ ଦେଖିବା ।" ସୁକୁମାର ତୀର ମାରିଲା । ସାଧୁ ପଚାରିଲେ, "କାହିଁ, ତମ ତୀରରେ ସେ ଆମ୍ବଟି ଝଡ଼ିଲା ନାହିଁ ତ !"

"ମହାଶୟ ! ମୁଁ ତ ତାକୁ ଲକ୍ଷ୍ୟ କରି ତୀର ମାରି ନଥିଲି !"

"ବେଶ୍ ! ତମେ ଜୀବନରେ କିଛି ଲକ୍ଷ୍ୟ ରଖି କାମ କରିଥିଲ କି ? ବିନା ଲକ୍ଷ୍ୟରେ ଲକ୍ଷ୍ୟ ଭେଦ ହେବ କିପରି ? ଯାଅ । ମନରୁ ବିଷାଦ ଦୂର କରି କୌଣସି ଲକ୍ଷ୍ୟ ନେଇ କାମ କର । ତେଣିକି ଦେଖିବା ।" ସୁକୁମାରର ଜ୍ଞାନୋଦୟ ହେଲା ।






# ପ୍ରଶଂସା ପତ୍ର

ଶ୍ରୀପୁର ଥିଲା ଗୋଟିଏ ବଡ଼ ଜମିଦାରି— ଛୋଟିଆ ରାଜ୍ୟଟିଏ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜମିଦାର ବଳବନ୍ତ ରାୟ ନିଜ ଜମିଦାରି ବାହାରେ ଆଉ ଖଣ୍ଡିଏ ଛୋଟିଆ ଜମିଦାରି କିଣିଲେ । ତାଙ୍କ ପ୍ରତିନିଧି ଭାବରେ ସେଠାରେ ଯିଏ ରହିବେ ତାଙ୍କୁ ନାଏବ କୁହାଯିବ । କାହାକୁ ନାଏବ ଭାବରେ ନିଯୁକ୍ତି ଦେଇ ସେଠାକୁ ପଠାଇବେ, ଏହା ହେଲା ତାଙ୍କର ଚିନ୍ତା ।

ତାଙ୍କ ଗୁମାସ୍ତା ଦୁଇଜଣ ଯୁବକଙ୍କ ନାମ ଦେଲେ । ଦୁହେଁ ଶ୍ରୀପୁରର ଲୋକ, କିନ୍ତୁ ଚାକିରି କରୁଥିଲେ ଅନ୍ୟ ଅଞ୍ଚଳରେ । ଦୁହେଁ ସେତେବେଳେ ଶ୍ରୀପୁର ଆସିଥାନ୍ତି ।

ଗୁମାସ୍ତା ସେ ଦୁଇଜଣଙ୍କୁ ଡକାଇଲେ ଏବଂ ସେମାନେ ନାଏବ ଭାବରେ ନିଯୁକ୍ତି ପାଇବାକୁ ପ୍ରସ୍ତୁତ କି ବୋଲି ପଚାରିଲେ । ସେମାନେ ଖୁସି ହେଲେ । ସେ ଦୁହିଙ୍କ ନାମ ବିଜୟ ଏବଂ କିଶୋର ।

ପ୍ରଥମେ ଜମିଦାର ବିଜୟଙ୍କୁ ଡକାଇଲେ ।

"ବାବୁ, ତମେ ଏ କାମ ସମ୍ଭାଳି ପାରିବ ବୋଲି ଭାବୁଛ ?" ସେ ବିଜୟଙ୍କୁ ପଚାରିଲେ ।

ବିଜୟ ଏ ପ୍ରଶ୍ନର କୌଣସି ମୌଖିକ ଉତ୍ତର ନ ଦେଇ ଜମିଦାରଙ୍କ ହାତକୁ ବିଡ଼ାଏ କାଗଜ ବଢ଼ାଇ ଦେଲେ । ଜମିଦାର ଦେଖିଲେ, ସେସବୁ ପ୍ରଶଂସା ପତ୍ର । ବିଶିଷ୍ଟ ଲୋକମାନେ ସେସବୁ ଦେଇଥିଲେ । ସେଥିରେ ବିଜୟଙ୍କ କାର୍ଯ୍ୟଦକ୍ଷତା ଓ ବୁଦ୍ଧିର ପ୍ରଶଂସା କରାଯାଇଥିଲା ।

ଜମିଦାର ବିଜୟ କେତେ ସ୍ଥାନରେ କିଭଳି ଦାୟିତ୍ୱମାନ ତୁଲାଇଛନ୍ତି, ସେକଥା ପଚାରିଲେ ଓ ବିଜୟ ଉତ୍ତର ଦେଲେ ।

ସୁରେନ୍ଦ୍ର

"ସବୁ ଆଜ୍ଞେ ମୁଁ ଦକ୍ଷ ଭାବରେ କାର୍ଯ୍ୟ ତୁଲାଇଛି। ଏସବୁ ପ୍ରଶଂସାପତ୍ରହିଁ ମୋ କାର୍ଯ୍ୟ-ଦକ୍ଷତାର ପ୍ରମାଣ।" ବିଜୟ ଶେଷରେ ନିଜ ସମ୍ପର୍କରେ ଏହି ମନ୍ତବ୍ୟ ଦେଲେ।

"ବେଶ୍, ବେଶ୍, ଭଲ କଥା। ତୁମେ ଯାଇପାର। ଯଥା ସମୟରେ ମୋର ନିଷ୍ପତ୍ତି ତୁମ୍ଭଙ୍କୁ ଜଣାଇ ଦିଆଯିବ।" ଜମିଦାର ଏହା କହି ବିଜୟଙ୍କୁ ବିଦାୟ ଦେଲେ।

ବିଜୟ ଯିବା ପରେ ଜମିଦାର କିଶୋରଙ୍କୁ ଡକାଇଲେ।

କିଶୋର ଆସି ନମସ୍କାର କରି ଠିଆ ହୋଇ ରହିଲେ।

"ତମେ କାମଟି ତୁଲାଇ ପାରିବ ବୋଲି ଭାବୁଛ?" ଜମିଦାର ପଚାରିଲେ।

"ହଜୁର! ମୋର ଯେ ଅଞ୍ଚଳ ବିଷୟରେ ବିଶେଷ ଧାରଣା ନାହିଁ। ଯଦି ମୋତେ କାମ ଦେବେ, ତେବେ ମୁଁ ତାକୁ ତୁଲାଇବା ନିମନ୍ତେ ଚେଷ୍ଟା କରିବି।" କିଶୋର କହିଲେ।

"ବେଶ୍! ଆଗାମୀ କାଲି କାମରେ ଯୋଗ ଦିଅ। ଦୁଇ ଚାରିଦିନ ଭିତରେ ତମକୁ ସେଠାକୁ ପଠାଇ ଦିଆଯିବ।" ଜମିଦାର ଏହା କହି କିଶୋରଙ୍କୁ ବିଦାୟ ଦେଲେ।

ଗୁମାସ୍ତା ହସି ପଚାରିଲେ, "ଆଜ୍ଞା, ଆପଣଙ୍କୁ ବିଜୟର ଏତେ ଗୁଡ଼ାଏ ପ୍ରଶଂସାପତ୍ର ମୋଟେ ପ୍ରଭାବିତ କଲା ନାହିଁ କିପରି?"

"ତା'ର ନିଜ ଉପରେ ମୋଟେ ଆସ୍ଥା ନ ଥିବାରୁ ସେ ଅନ୍ୟର ପ୍ରଶଂସା ପତ୍ର ଦ୍ୱାରା ମୋତେ ପ୍ରଭାବିତ କରିବାକୁ ଚେଷ୍ଟା କରୁଥିଲା। ମୋ ପ୍ରଶ୍ନର ଉତ୍ତରରେ ସେ ନିଜେ କ'ଣ ଭାବୁଛି ତାହା ନକହି 'ପ୍ରଶଂସାପତ୍ର ବଢ଼ାଇ ଦେବାର ଅର୍ଥ କ'ଣ? ଆଉ ଗୋଟାଏ ମଜା କଥା ହେଲା, ସେସବୁ ପ୍ରଶଂସା ପତ୍ର ବିଶିଷ୍ଟ ଲୋକେ ଦେଇଛନ୍ତି ଠିକ୍, କିନ୍ତୁ ଯେଉଁମାନଙ୍କ ପାଖରେ ସେ କାମ କରିଛି, ସେସବୁ ପ୍ରଶଂସକମାନେ ସେମାନଙ୍କ ଭିତରୁ କେହି ନୁହନ୍ତି!" ଜମିଦାର କହିଲେ।





# ଉଦାସୀନ ରାଜପୁତ୍ର

କାଶୀ ନଗରୀରେ ରାଜୁତି କରୁଥିଲେ ରାଜା ବ୍ରହ୍ମଦତ୍ତ । ମଦ୍ରଦେଶର ରାଜକନ୍ୟା ଚନ୍ଦ୍ରାଦେବୀ ଥିଲେ ତାଙ୍କ ପାଟରାଣୀ ।

ରାଜା ସୁଗୃହସ୍ଥ ରୂପେ ରାଜକାର୍ଯ୍ୟ ପରିଚାଳନା କରୁଥିଲେ ଓ ନିଜେ ନିଜ କର୍ତ୍ତବ୍ୟ ପରାୟଣତା ଯୋଗୁଁ ବେଶ୍ ଖୁସିଥିଲେ । ପ୍ରଜାମାନେ ବି ସନ୍ତୁଷ୍ଟ ଥିଲେ । କିନ୍ତୁ କ୍ରମେ ତାଙ୍କୁ ଗୋଟିଏ ଚିନ୍ତା ଘାରିଲା । ତାଙ୍କର ପିଲାପିଲି ହେଲେ ନାହିଁ । ଦିନେ ରାଜ୍ୟର ସମ୍ଭ୍ରାନ୍ତ ବ୍ୟକ୍ତି ଓ ପଣ୍ଡିତମାନେ ଏକାଠି ଆସି ରାଜାଙ୍କୁ କହିଲେ କି ଭବିଷ୍ୟତରେ ଯେପରି ରାଜ୍ୟର ସିଂହାସନ ଖାଲି ନହେବ, ସେ ଦୃଷ୍ଟିରୁ ରାଜା ବ୍ରତ, ଯଜ୍ଞ ଇତ୍ୟାଦି ଦ୍ୱାରା ଦେବତାମାନଙ୍କୁ ସନ୍ତୁଷ୍ଟ କରି ପୁତ୍ରଲାଭ କରିବା ଆବଶ୍ୟକ ।

ରାଜା ଏ ପ୍ରସ୍ତାବକୁ ସ୍ୱାଗତ କଲେ ଓ ଯଜ୍ଞ ଓ ବ୍ରତାଦି ଅନୁଷ୍ଠାନ କଲେ । ରାଣୀ ଏକାଗ୍ର ଭାବରେ ପ୍ରାର୍ଥନା କରିବାକୁ ଲାଗିଲେ: "ହେ ଦେବଗଣ! ମୋତେ ଏକ ସୁସନ୍ତାନ ଦିଅ!"

ଦେବରାଜ ଇନ୍ଦ୍ରଙ୍କ ମନରେ ରାଣୀଙ୍କ ପ୍ରାର୍ଥନା ରେଖାପାତ କଲା । ସେ ତାଙ୍କ ମନସ୍କାମନା ପୂର୍ଣ୍ଣ କରିବାକୁ ନିଷ୍ପତ୍ତି କଲେ । କେଉଁ ମହାତ୍ମାଙ୍କୁ ସେ ରାଣୀଙ୍କ ଗର୍ଭକୁ ପଠାଇବେ? ହଠାତ୍ ତାଙ୍କର ମନେ ପଡ଼ିଗଲା ବୋଧିସତ୍ତ୍ୱଙ୍କ କଥା ।

ସେ ବୋଧିସତ୍ତ୍ୱଙ୍କୁ ଯାଇ କହିଲେ, "ହେ ବୋଧିସତ୍ତ୍ୱ! ତମେ ସର୍ବଦା କରୁଣାମୟ । କାଶୀର ରାଜା ଓ ରାଣୀ ନିଃସନ୍ତାନ ହୋଇଥିବାରୁ ମନଃପୀଡ଼ାରେ ଅଛନ୍ତି । ତମେ ଯାଇ ସେମାନଙ୍କ ସନ୍ତାନ ରୂପେ ଜନ୍ମ ଗ୍ରହଣ କରି ସେମାନଙ୍କୁ ଆନନ୍ଦ ଦିଅ । ତା'ଛଡ଼ା ରାଜା ରୂପେ ତମେ ଅଗଣିତ ପ୍ରଜାଙ୍କର ଅନେକ



ପ୍ରକାର ହିତ ସାଧନ କରିପାରିବ । ଲୋକଙ୍କ ମଙ୍ଗଳ ସକାଶେ ଏହା ଏକ ସୁଯୋଗ ।"

ବୋଧିସତ୍ତ୍ୱ ଚିନ୍ତାରେ ପଡ଼ିଲେ । ବହୁ ବର୍ଷ ପୂର୍ବେ ସେ ଥରେ କାଶୀର ରାଜା ହୋଇଥିଲେ । ରାଜକାର୍ଯ୍ୟ ତୁଲାଇବା ଭିତରେ ତାଙ୍କୁ ଯେତିକି ପାପ କରିବାକୁ ପଡ଼ିଥିଲା, ସେଥିଯୋଗୁଁ ସେ କିଛିକାଳ ନର୍କ ଭୋଗ କରିଥିଲେ । ସେ ପାପର କ୍ଷାଳନ ହେବା ପରେ ସେ ଅବଶ୍ୟ ଦେବଲୋକକୁ ଚାଲି ଆସିଥିଲେ ଏବଂ ବର୍ତ୍ତମାନ ଦେବଲୋକ ଅତିକ୍ରମ କରି ଊର୍ଦ୍ଧ୍ୱଲୋକକୁ ଯିବା ନିମନ୍ତେ ସେ ପ୍ରସ୍ତୁତ ହେଉଥିଲେ ।

ବୋଧିସତ୍ତ୍ୱ ଦ୍ୱିଧା କରିବାର ଲକ୍ଷ୍ୟ କରି ଦେବରାଜ ଇନ୍ଦ୍ର କହିଲେ, "ହେ ମହାନ୍ ଆତ୍ମା! ତମେ ତ ମୁକ୍ତ । ତମକୁ କୌଣସି ଅବସ୍ଥା ତନ୍ତ ବା କୌଣସି ପରିସ୍ଥିତି ବନ୍ଧନରେ ପକାଇ ପାରିବ ନାହିଁ । ତେଣୁ ତୁମେ ଦ୍ୱିଧା କରୁଛ କାହିଁକି? ଲୋକ-କଲ୍ୟାଣ ସର୍ବଦା ତମର ବ୍ରତ ହୋଇଛି । କାଶୀ ରାଜପୁତ୍ର ରୂପେ ତୁମେ ସେ ଦିଗରେ ଅନେକ କାର୍ଯ୍ୟ କରି ପାରିବ । ନିଜର ମାନବ ଜନ୍ମ ସାର୍ଥକ କରି ପାରିବ । ସହସ୍ର ସହସ୍ର ନରନାରୀ ତମ ସଂସ୍ପର୍ଶରେ ଆସି ସତ୍ ଚେତନା ଲଭ କରିବେ । ଏହା କ'ଣ କମ୍ କଥା? ତା'ଛଡ଼ା, ମାନବ ଜୀବନ ଦୀର୍ଘ ନୁହେଁ । ତୁମେ ଶୀଘ୍ର ଲେଉଟି ଆସିବ ।"

ପୁଣି ଥରେ ରାଜା ଘରେ ଜନ୍ମ ହେବାର ଆଗ୍ରହ ତାଙ୍କର ମୋଟେ ନଥିଲା । କିନ୍ତୁ କାଶୀର ରାଜା ରାଣୀଙ୍କ ମନସ୍ତାପ କଥା ଜାଣି ସେ ଇନ୍ଦ୍ରଙ୍କ ପ୍ରସ୍ତାବରେ ରାଜି ହୋଇଗଲେ ।

ବୋଧିସତ୍ତ୍ୱ କାଶୀ ରାଜାଙ୍କ ଘରେ ଜନ୍ମ ଗ୍ରହଣ କରୁଥିବାର ଜାଣିବା ମାତ୍ରେ ଆଉ ପାଞ୍ଚଶହ ସାଧୁ ପୁରୁଷଙ୍କ ଆତ୍ମା ସେଠାରେ ଜନ୍ମ ଗ୍ରହଣ କରିବାକୁ ପ୍ରସ୍ତୁତ ହେଲେ ।

ସେମାନେ ରାଜପରିବାରର ନିକଟତମ ଅମାତ୍ୟ, ମନ୍ତ୍ରୀ ଓ ସମ୍ଭ୍ରାନ୍ତ ଲୋକଙ୍କ ଘରମାନ ଠାବ କରି ମାନବ ଶିଶୁ ରୂପେ ବୋଧିସତ୍ତ୍ୱଙ୍କ ସାହଚର୍ଯ୍ୟ ଲଭ କରିବା ନିମନ୍ତେ ଆଗ୍ରହୀ ହେଲେ ।

ଯଥା ସମୟରେ ରାଣୀ ଚନ୍ଦ୍ରାଦେବୀଙ୍କ ଗର୍ଭରୁ ଜନ୍ମ ନେଲେ ବୋଧିସତ୍ତ୍ୱ । ପ୍ରାୟ ଏକ ସମୟରେ ନଗରୀର ସମ୍ଭ୍ରାନ୍ତ ବଂଶମାନଙ୍କରେ ଆଉ ପାଞ୍ଚଶହ ଶିଶୁ ଜନ୍ମ ଗ୍ରହଣ କଲେ । ରାଜା ନିଜର ସନ୍ତାନ ହେବାରୁ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଏକା ଦିନରେ ଏତେ ଗୁଡ଼ିଏ ଶିଶୁ ଜନ୍ମ ଗ୍ରହଣ କରିଥିବାର ସମ୍ବାଦ ପାଇ ଆମୋଦିତ ହେଲେ । ସେ ଘୋଷଣା କଲେ କି ସେ ଶିଶୁମାନେ ଅଳ୍ପ ବଡ଼ ହେଲେ ରାଜପ୍ରାସାଦରେ ଆସି ରହିବେ ଓ ରାଜକୁମାରଙ୍କ ସହ ସେମାନେ ଖେଳଧୂଳି କରିବେ ।



କାଶୀ ନଗରୀରେ ମହା ଜାକଜମକରେ ଉତ୍ସବ ପାଳନ ହେଲା । ରାଜା ଯାଇ ଆନନ୍ଦରେ ପାଟରାଣୀଙ୍କୁ କହିଲେ, "କୁହ, ତମକୁ କି ପୁରସ୍କାର ଦେବି । ଯେଉଁ ବର ମାଗିବ, ତାହା ଦେବି ।"

ରାଣୀ ଆନନ୍ଦିତ ହେଲେ । କିନ୍ତୁ ସଙ୍ଗେ ସଙ୍ଗେ ସେ କୌଣସି ବର ନ ମାଗି ଅପେକ୍ଷା କରିବାକୁ ସ୍ଥିର କଲେ ।

"ବେଶ୍ । ଯଥା ସମୟରେ ମାଗିବି ।" ରାଣୀ କହିଲେ ।

ରାଜପୁତ୍ରଙ୍କ ନାମକରଣ ହେଲା ତେମିୟ । ରାଜ ଜ୍ୟୋତିଷ ତେମିୟଙ୍କ ଜାତକ ପ୍ରସ୍ତୁତ କଲେ । ରାଜା ପଚାରିଲେ, "ଶିଶୁ ଭାଗ୍ୟରେ କୌଣସି ଦୁଷ୍ଟ ଗ୍ରହ ନାହାନ୍ତି ତ ?"

"ନା, ମହାରାଜ, କୌଣସି ଦୁଷ୍ଟ ଗ୍ରହର ପ୍ରଭାବ ନାହିଁ । ରାଜକୁମାର ଦୀର୍ଘାୟୁ ହେବେ ।" ଜ୍ୟୋତିଷ କହିଲେ ।

ରାଜକୁମାର ଖୁବ୍ ଛୋଟ ହୋଇଥିବା ବେଳେ ଦିନେ ରାଜା ତାଙ୍କୁ କୋଳରେ ଧରି ଦରବାରରେ ବିଚାର ପାଇଁ ବସିଲେ । ସେଦିନ ଚାରିଜଣ ଅପରାଧୀଙ୍କ ବିରୁଦ୍ଧରେ ଅଭିଯୋଗମାନ ଆସିଥାଏ । ରାଜା ଉପରଠାଉରିଆ ଭାବରେ ଅଭିଯୋଗମାନ ଶୁଣି ଜଣେ ଅପରାଧୀଙ୍କୁ ହଜାରେ ବେତ ପାହାର ଦଣ୍ଡ ଦେଲେ; ଅନ୍ୟ ଜଣକୁ ଆଜୀବନ ଆବରୁଦ୍ଧ କଲେ; ତୃତୀୟ ଜଣକୁ ଶୂଳରେ ବସାଇବାର ଓ ଚତୁର୍ଥ ଜଣର ମୁଣ୍ଡ କାଟ ପାଇଁ ହୁକୁମ ଦେଲେ ।



ବୋଧିସତ୍ତ୍ୱଙ୍କର ସେତେବେଳେ ପାଟି ଫିଟିନାହିଁ । ତଥାପି ସେ ସବୁ ବୁଝୁଥାନ୍ତି । ସେ ଦୀର୍ଘନିଃଶ୍ୱାସ ଛାଡ଼ି ଭାବୁଥାନ୍ତି : ହାୟ ! ଥରେ ରାଜା ହୋଇ ମୁଁ ବହୁତ ସାଧୁ ସଚ୍ଚୋଟ ଭାବରେ ଶାସନ କରିବା ସତ୍ତ୍ୱେ ନିଜ ଅଜ୍ଞାତରେ ଯେତିକି ପାପ କରିଥିଲି, ସେଥିପାଇଁ ମୋତେ ନର୍କ ଭୋଗିବାକୁ ପଡ଼ିଲା । ମୋର ପିତା ଏ ଅଜ୍ଞାନୀ ରାଜା ଉପରଠାଉରିଆ ଭାବରେ ବିଚାର କରି ଯେତେ ପାପ ଅର୍ଜନ କରୁଛନ୍ତି: ଏହାର ପରିଣାମ କେଡ଼େ ଭୟାବହ ହେବ ସେ ଜାଣି ନାହାନ୍ତି ।

ଏକଥା ଭାବୁଁ ଭାବୁଁ ସେ ନିଜେ ରାଜପୁତ୍ର ରୂପେ ଜନ୍ମ ଗ୍ରହଣ କରିବାକୁ ସମ୍ମତ ହୋଇଥିବାରୁ ଅନୁତାପ କରିବାକୁ ଲାଗିଲେ । ରାଜା ହୋଇ ଯାହା କରିବେ, ତାହାର ପରିଣାମରେ ତାଙ୍କୁ ପୁଣି ନର୍କଭୋଗ କରିବାକୁ ପଡ଼ିବ, ଏକଥା ଭାବି ସେ କୌଣସି ମତେ ସେଭଳି ସମ୍ଭାବନା ଏଡ଼ାଇ ଯିବା ନିମନ୍ତେ ଦୃଢ଼ ନିଷ୍ପତ୍ତି କଲେ ।

ଏହାପରେ ରାଜପୁତ୍ରଙ୍କ ମୁହଁରୁ ହସ ଲିଭିଗଲା । ସେ ସର୍ବଦା ଚିନ୍ତାମଗ୍ନ ରହିଲେ ।

ସେହି ଗଡ଼ରେ ପୂର୍ବ ଜନ୍ମରେ ଯିଏ ତାଙ୍କର ଜନନୀ ଥିଲେ, ତାଙ୍କ ଆତ୍ମା ତାଙ୍କୁ ସ୍ୱପ୍ନରେ ଦେଖାଦେଇ କହିଲେ, "ବାପା ! ଭୟ କରନା । ତୁ ଯଦି ସବୁ ଜଞ୍ଜାଳରୁ ମୁକ୍ତ ରହିବାକୁ ଚାହୁଁ, ତେବେ କାଲ, ବୋବା ଓ ଅଥର୍ବ ଭଳି ବ୍ୟବହାର କର ।"

ନିଦ ଭାଙ୍ଗି ଯିବା ପରେ ବୋଧିସତ୍ତ୍ୱ ତାହାହିଁ କରିବାକୁ ସ୍ଥିର କଲେ ।

କ୍ରମେ ଅନ୍ୟ ପାଞ୍ଚଶହ ଶିଶୁମାନଙ୍କୁ ରାଜପ୍ରାସାଦକୁ ଆସି ରାଜପୁତ୍ରଙ୍କ ସହ ମିଶିବାର ସୁଯୋଗ ଦିଆଗଲା । ସେମାନେ ଖେଳନ୍ତି, କିନ୍ତୁ ରାଜପୁତ୍ରଙ୍କର ଖେଳିବାରେ ମନ ନଥାଏ । ଭୋକ କଲେ ସେମାନେ କାନ୍ଦନ୍ତି, କିନ୍ତୁ ରାଜପୁତ୍ର ଚୁପ୍ ରହନ୍ତି । ସେ ମନେ ମନେ ନିଜକୁ କହନ୍ତି ଯେ ନର୍କଭୋଗ ଅପେକ୍ଷା ଭୋକରେ ମୃତ୍ୟୁ ବରଣ କରିବା ଶ୍ରେୟସ୍କର ।

ରାଜପୁତ୍ରଙ୍କର ଏ ବିଚିତ୍ର ଆଚରଣ ବିଷୟ ଧାଇମାନେ ଯାଇ ରାଜାଙ୍କୁ କହିଲେ । ରାଜା ଜ୍ୟୋତିଷ, ପଣ୍ଡିତ ଓ ପୁରୋହିତମାନଙ୍କ




ପରାମର୍ଶ ଲୋଡ଼ିଲେ । ସେମାନେ କହିଲେ, "ରାଜପୁତ୍ର ନିଜେ ଖାଇବା ପାଇଁ ବ୍ୟାକୁଳତା ନ ଦେଖାଇବା ସତ୍ତ୍ୱେ ତାଙ୍କୁ ଠିକ୍ ସମୟରେ ଖାଦ୍ୟପେୟ ପରଶି ଦିଆଗଲେ ସେ ତାହା ଗ୍ରହଣ କରିବେ ।"

ସେହିପରି କରାଗଲା ଓ ଦିନ ଗଡ଼ି ଚାଲିଲା । କିନ୍ତୁ ରାଜପୁତ୍ର କୌଣସି ବିଷୟରେ ଆଗ୍ରହ ନ ଦେଖାଇବା, ଭୋକ କଲେ ନ କାନ୍ଦିବା, ଖେଳିବାରେ ମୋଟେ ମନ ନ ଦେବା— ଏସବୁ ସମସ୍ତଙ୍କୁ ବଡ଼ ବିଚିତ୍ର ଲାଗିଲା ।

ଦିନେ ରାଜା ପିଲାମାନେ ରାଜପୁତ୍ରଙ୍କୁ ଘେରି ଖେଳୁଥିବା ବେଳେ ପାଛିଆଏ ଲଡ଼ୁ ପଠାଇ-ଦେଲେ । ପିଲାମାନେ ତତ୍କ୍ଷଣାତ୍ ପାଛିଆରୁ ଲଡ଼ୁମାନ କାଢ଼ି ନେଲେ । ପରସ୍ପର ଛଡ଼ାଛଡ଼ି ହେଲେ । କିନ୍ତୁ ରାଜପୁତ୍ର ତାହା ପ୍ରତି ମୋଟେ ଧ୍ୟାନ ଦେଲେ ନାହିଁ । ସେ ଉଦାସୀନ ହୋଇ ବସି ରହିଲେ । ରାଣୀ ଚନ୍ଦ୍ରାଦେବୀ ଅଳ୍ପ ଦୂରରେ ଠିଆ ହୋଇ ସବୁ ଦେଖୁଥିଲେ । ରାଜପୁତ୍ର ଏଭଳି ବିତସ୍ପୃହ ରହିବାର ଦେଖି ରାଣୀଙ୍କ ଆଖିରୁ ଲୁହ ଆସିଲା । ସେ ଦୌଡ଼ିଯାଇ ଗୋଟିଏ ଲଡ଼ୁ ଉଠାଇ ଆଣି ପୁଅ ପାଟିରେ ଦେଲେ । ରାଜପୁତ୍ର ବିନା ଆଗ୍ରହରେ ତାକୁ ଖାଇଲେ । ରାଜା କ୍ରମେ କ୍ରମେ ଅଧିକ ଚିନ୍ତିତ ହେଲେ । ରାଜପୁତ୍ର ଯେତିକି ବଡ଼ ହେଲେ, ତାଙ୍କ ଉଦାସୀନତା ସେତିକି ଅଧିକ ମାତ୍ରାରେ ସ୍ପଷ୍ଟ ହେଲା ।

ଦିନେ ରାଜା ରାଜପୁତ୍ରଙ୍କ ସମେତ ସବୁ ପିଲାଙ୍କୁ ଖେଳିବା ନିମନ୍ତେ ଗୋଟିଏ ଛପର ଘର ଭିତରକୁ ପଠାଇଦେଲେ । ପାଖରେ ସୈନ୍ୟମାନେ ଜଗି ରହିଲେ । ପିଲାମାନେ ଖେଳୁଥିବା ବେଳେ ଘରେ ନିଆଁ ଲଗାଇ ଦିଆଗଲା । ସଙ୍ଗେ ସଙ୍ଗେ ସବୁ ପିଲା ଚିତ୍କାର କରି ଦୌଡ଼ି ପଳାଇଗଲେ । କିନ୍ତୁ ରାଜପୁତ୍ର ଚୁପ୍‌ଚୁପ୍ ବସି ରହିଲେ । ସେ ମନେ ମନେ କହୁଥାନ୍ତି; ନର୍କ ଭୋଗ ଅପେକ୍ଷା ଜଳି ମରିଗଲେ ଭଲ !

ନିଆଁ ଯେତେବେଳେ ତାଙ୍କ ପାଖକୁ ଆସିଗଲା, ସୈନ୍ୟମାନେ ଦୌଡ଼ିଯାଇ ତାଙ୍କୁ ଟେକି ନେଇ ଆସିଲେ ।

ରାଜା ଭାବିଥିଲେ ସଙ୍କଟରେ ପଡ଼ିଲେ ରାଜପୁତ୍ର ଚଳଚଞ୍ଚଳ ହେବେ । କିନ୍ତୁ ତାଙ୍କ ବ୍ୟବହାର ବଦଳିଲା ନାହିଁ ଦେଖି ସେ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଦୁଃଖିତ ହେଲେ । ତଥାପି ସେ ଚେଷ୍ଟାରୁ ବିରତ ହେଲେ ନାହିଁ । ପିଲାମାନେ ଖେଳୁଥିବା ବେଳେ ତାଙ୍କ ନିର୍ଦ୍ଦେଶରେ ସେମାନଙ୍କ ଭିତରକୁ ଗୁଡ଼ିଏ ସାପ ଛାଡ଼ି ଦିଆଗଲା । ଅବଶ୍ୟ ସେସବୁ ସାପଙ୍କ ପାଖରେ ଟିକେ ମଧ୍ୟ ବିଷ ନଥିଲା । ସାପ ଦେଖି ପିଲାଏଁ ଯିଏ ଯୁଆଡ଼େ ପାରିଲେ ଦୌଡ଼ି ପଳାଇଲେ । କିନ୍ତୁ ରାଜପୁତ୍ର ସେମିତି ବସି ରହିଲେ । ସାପମାନେ ତାଙ୍କ ଦେହ ଉପରକୁ ଚଢ଼ିଯିବା ସତ୍ତ୍ୱେ ସେ ବିଚଳିତ ବୋଧ କଲେ ନାହିଁ ।

ରାଜପୁତ୍ରଙ୍କ ଭିତରେ ଭାବାବେଗର ଉଦ୍ରେକ କରିବା ପାଇଁ ରାଜା ଆଉଗୋଟିଏ ଉପାୟ କଲେ । ଜଣେ ଅଭିନେତା ହାତରେ ଗୋଟିଏ ଛୁରୀ ଧରି ପିଲାଙ୍କ ଭିତରକୁ ମାଡ଼ି ଆସି ପାଟିକରି କହିଲା, "ମୁଁ ରାଜପୁତ୍ରଙ୍କୁ ହତ୍ୟା କରିବି!" ସବୁ ପିଲା ପଳାଇଗଲେ । କିନ୍ତୁ ରାଜପୁତ୍ରଙ୍କ ମନରେ କୌଣସି ଭାବାନ୍ତର ହେଲା ନାହିଁ । ଅଭିନେତା ଯେତେ ଚେଷ୍ଟା କଲେ ବି ଫଳ ହେଲା ନାହିଁ । ଶେଷରେ ହାଲ୍ ଛାଡ଼ି ଦେଲା ।

ଏହାପରେ ରାଜା ଅନ୍ୟ ଉପାୟ ଅବଲମ୍ବନ କଲେ । ସେତେବେଳକୁ ରାଜପୁତ୍ର ତରୁଣ ହେଲେଣି । ରାଜା ସୁନ୍ଦରୀ ନର୍ତ୍ତକୀମାନଙ୍କୁ ପଠାଇଲେ । ସେମାନେ ରାଜପୁତ୍ରଙ୍କୁ ସ୍ନାନ କରାଇ, ସୁଗନ୍ଧ ଅତର ତାଙ୍କ ଉପରେ ଢାଳି ତାଙ୍କୁ ବସାଇ ନାଚଗୀତ ଦେଖାଇଲେ । କିନ୍ତୁ କିଛି ଫଳ ହେଲା ନାହିଁ ।

ସେମାନେ ଯାଇ ରାଜାଙ୍କୁ କହିଲେ, "ମହିମା! ରାଜପୁତ୍ର ମଣିଷ ନୁହନ୍ତି । ଅନ୍ୟ କିଛି । ତାଙ୍କର ରସଜ୍ଞାନ ନାହିଁ, ସୌନ୍ଦର୍ଯ୍ୟ ଜ୍ଞାନ ନାହିଁ । ଆମେ କ'ଣ କରିବୁ ?"

ରାଜା ଦୀର୍ଘନିଃଶ୍ୱାସ ଛାଡ଼ିଲେ ।

(ଆଗାମୀ ସଂଖ୍ୟାରେ ସମାପ୍ୟ)






ଭାରତର ମନ୍ଦିର

# ଅମରନାଥ

ଥରେ ଦେବୀ ପାର୍ବତୀ ଶିବଙ୍କୁ ପଚାରିଲେ, "ପରମେଶ୍ୱର ! ଆପଣ ସର୍ବଦା କାହିଁକି ଗୋଟିଏ ମୁଣ୍ଡମାଳ ଧାରଣ କରିଥାନ୍ତି ?" ଶିବ ହସିଲେ ଏବଂ କହିଲେ, "ଦେବୀ, ତୁମେ କେତେଥର ଜନ୍ମ ହୋଇ ତପସ୍ୟା କରିଛ । ଏସବୁ ତୁମର ପୂର୍ବ ଜନ୍ମର ସ୍ମୃତି ତୁମର ମୁଣ୍ଡମାଳ ।"

ଦେବୀ ଚମକି ପଡ଼ିଲେ ଓ ପ୍ରଶ୍ନ କଲେ, "ଆଚ୍ଛା, ତୁମର କେବେ ମୃତ୍ୟୁ ହୁଏ ନାହିଁ । ଅଥଚ ମୋତେ କାହିଁକି ମୃତ୍ୟୁ ବରଣ କରିବାକୁ ପଡ଼େ ?" ଶିବ କହିଲେ, "ସେ ଅମରତ୍ୱର ରହସ୍ୟ ଜାଣନ୍ତି । ତେଣୁ ମୃତ୍ୟୁ ବରଣ କରନ୍ତି ନାହିଁ ।"





ଦେବୀ ସେ ରହସ୍ୟ ଜାଣିବାକୁ ଆଗ୍ରହ ପ୍ରକାଶ କଲେ । ଶିବ ତାଙ୍କ ଅନୁଚରମାନଙ୍କୁ ଏଭଳି ଏକ ସ୍ଥାନ ଆନ୍ୱେଷଣ କରି ବାହାର କରିବାକୁ କହିଲେ, ଯେଉଁଠାରେ କୌଣସି ପ୍ରାଣୀ—ଏପରିକି କୃମି କୀଟାଣୁ ମଧ୍ୟ ନଥିବେ ।



ଅନୁଚରମାନେ ହିମାଳୟ ପର୍ବତମାଳା ଭିତରେ ଗୋଟିଏ ଗୁମ୍ଫା ଠାବ କଲେ । ସେଠାରେ କୌଣସି ପ୍ରାଣୀଙ୍କ ଚହଲବର୍ତ୍ତ ନଥିଲା । ଅନୁଚରମାନଙ୍କଠୁଁ ସେ ଖବର ପାଇ ଶିବ ପାର୍ବତୀ ଯାଇ ସେଠାରେ ପହଞ୍ଚିଲେ । ଶିବ ଅମରତ୍ୱର ରହସ୍ୟ କହିଗଲେ ।

ଶିବଙ୍କ କଥା ମଝିରେ କେତେବେଳେ ଦେବୀ ନିଦରେ ଶୋଇ ପଡ଼ଥାନ୍ତି, କିନ୍ତୁ ଅବିରାମ ଭାବରେ ଆଉ କେହି 'ହୁଁ' 'ହୁଁ' କହୁଥାଏ । ଶିବ ଯେତେବେଳେ ଏକଥା ବୁଝିଲେ, ସେତେବେଳେ ସେ ଆଶ୍ଚର୍ଯ୍ୟ ହୋଇ ସେ ପ୍ରାଣୀଟି କିଏ ତାହା ଜାଣିବାକୁ ଚେଷ୍ଟା କଲେ ।





ପଥର ତଳେ ଥିବା ଗୋଟିଏ ଗର୍ଭରେ ପକ୍ଷୀ-ଅଣ୍ଡାଟିଏ ଥିଲା । ସେ ଅଣ୍ଡା ଫୁଟାଇ କେତେବେଳେ ଶାବକ ବାହାରି ଶିବଙ୍କ କଥା ଶୁଣୁଥିଲା । ସେହି ପକ୍ଷୀ ଶାବକହିଁ 'ହୁଁ' 'ହୁଁ' କହୁଥିଲା ବୋଲି ଶିବ ବୁଝିଲେ ।

ପକ୍ଷୀଟି ଫୁର୍ ର୍ କରି ଉଡ଼ି ଚାଲିଗଲା । ସେଠାରୁ ବହୁ ଦୂରରେ ଥିବା ମହର୍ଷି ବ୍ୟାସଙ୍କ ଆଶ୍ରମରେ ଯାଇ ସେ ପହଞ୍ଚିଲା । ସେ ପକ୍ଷୀଟି ଜାତରେ ଶୁଆ । ସେ ଯାଇ ବ୍ୟାସଦେବଙ୍କ ସ୍ତ୍ରୀଙ୍କ ଦେହରେ ଲୀନ ହୋଇଗଲା । ତାଙ୍କ ସନ୍ତାନ ରୂପେ ଜନ୍ମ ହୋଇ ସେ ଶୁକଦେବ ନାମରେ ଖ୍ୟାତ ହେଲା ।






ଯେଉଁ ଗୁମ୍ଫା ଭିତରେ ଶିବ ଅମରତ୍ୱର ରହସ୍ୟ ଉଚ୍ଚାରଣ କରିଥିଲେ, ତାହାର ସନ୍ଧାନ ମିଳିଲା ବହୁ କାଳ ପରେ । ଦିନେ ଗୋଟିଏ ଗୋରୁ ଜଗୁଆଳ ତା'ର ଗୋଟିଏ ଗୋରୁର ସନ୍ଧାନରେ ଯାଇ ସେ ଗୁମ୍ଫାରେ ପହଞ୍ଚିଗଲା । ସେଠାରେ ସେ ଦେଖିଲା ବରଫରେ ନିର୍ମିତ ଅପୂର୍ବ ଶିବଲିଙ୍ଗ । ଶ୍ରଦ୍ଧା ଓ ଭକ୍ତିରେ ତା' ହୃଦୟ ଭରିଗଲା ।

ସେ ଲୋକଟି ଆସି କାଶ୍ମୀର ରାଜାଙ୍କୁ ସେ ଗୁମ୍ଫାର ସନ୍ଧାନ ଦେଲା । ସପରିବାରେ ରାଜା ଯାଇ ସେଠାରେ ପହଞ୍ଚିଲେ । ସେ ଅଞ୍ଚଳରେ ଥିବା କେତେକ ଋଷି ତାଙ୍କୁ ସେ ଗୁମ୍ଫାର ଇତିହାସ କହିଲେ ଓ ତାକୁ ପ୍ରକୃତି ହାତରେହିଁ ଛାଡ଼ିଦେବା ଠିକ୍ ହେବ ବୋଲି ମତ ଦେଲେ ।





ପ୍ରତିବର୍ଷ ଅଗଷ୍ଟ ମାସରେ ଭକ୍ତମାନେ ଏ ଗୁମ୍ଫାଠାରୁ ୪୬ କିଲୋମିଟର ଦୂରବର୍ତ୍ତୀ ପହେଲଗାଓଁ ଠାରେ ଏକତ୍ର ହୁଅନ୍ତି । ସେଠାରୁ ଜଣେ ମହନ୍ତଙ୍କ ନେତୃତ୍ୱରେ ସେମାନେ ଗୁମ୍ଫା ଅଭିମୁଖେ ଯାତ୍ରାରମ୍ଭ କରନ୍ତି ।

ଅସାଧାରଣ ପ୍ରାକୃତିକ ଦୃଶ୍ୟାବଳି ମଧ୍ୟ ଦେଇ, ରମଣୀୟ ସରୋବର ପାଖ ଦେଇ ଏବଂ ତୁଷାରମୟ ଉପତ୍ୟକା ଅତିକ୍ରମ କରି ଯାତ୍ରୀମାନେ ପ୍ରାୟ ପାଞ୍ଚଦିନ ପରେ ଯାଇ ସେ ଗୁମ୍ଫାରେ ପହଞ୍ଚନ୍ତି ଏବଂ ଶିବଲିଙ୍ଗ ଦର୍ଶନ କରନ୍ତି ।






ନୈସର୍ଗିକ ଉପାୟରେ ତୁଷାର-ସଞ୍ଚାର ଦ୍ୱାରା ଏ ଅଦ୍ଭୁତ ଶିବଲିଙ୍ଗ ପ୍ରସ୍ତୁତ ହୋଇଥାଏ । କୁହାଯାଏ ପ୍ରଥମେ ମହର୍ଷି ଭୃଗୁ ଏହା ଦର୍ଶନ କରିଥିଲେ । ତାହା ବହୁ ଯୁଗ ତଳର କଥା । ଅମରନାଥ ନାମରେ ଖ୍ୟାତ ଏହି ମହାତୀର୍ଥ ଦର୍ଶନକୁ ଭକ୍ତମାନେ ପରମ ସୌଭାଗ୍ୟର କଥା ବୋଲି ମଣିଥାନ୍ତି ।




# ଦରବାରୀ ପେଟୁ

ଗଙ୍ଗାପୁରର ଟୋକା ଦୁର୍ଯ୍ୟୋଧନ ଭାରି ଗପୁଡ଼ି, କିନ୍ତୁ କାମଦାମ ମୋଟେ କରେ ନାହିଁ । ଗାଁରେ ଯାହାର ଯେଉଁଦିନ ବିଶ୍ରାମ ଲୋଡ଼ାଥାଏ କିମ୍ବା ଯିଏ ଅସୁସ୍ଥ ଥାଏ, ତା' ପାଖରେ ଦୁର୍ଯ୍ୟୋଧନ ବସି ଦୁନିଆଯାକର ଅଜବ କଥା ଗପେ । ସେମାନେ କିଛି ମନେ କରନ୍ତି ନାହିଁ, କିନ୍ତୁ ଯେଉଁମାନଙ୍କର କାମଦାମ ଅଛି, ସେମାନଙ୍କ ପାଖରେ ବସି ଗପସପ କରି ସେମାନଙ୍କ ସମୟ ନଷ୍ଟ କଲେ ସେମାନେ କିପରି ସେଥିରେ ଖୁସି ହେବେ? ଅସୁବିଧା ହେଲା, ଦୁର୍ଯ୍ୟୋଧନ ସେମାନଙ୍କ ବିରକ୍ତି କଥା ବୁଝିପାରେ ନାହିଁ ।

ଗାଁର ଟୋକାମାନେ ତା' କଥା ଯେତିକି ଉପଭୋଗ କରନ୍ତି, ନିଜ ନିଜ ଭିତରେ ତାକୁ ସେତିକି ମାତ୍ରାରେ ଥଟ୍ଟା ବି କରନ୍ତି । ଦିନେ ସେମାନଙ୍କ ଭିତରୁ ଜଣେ ପଚାରିଲା, "ଆରେ ଭାଇ ଦୁର୍ଯ୍ୟୋଧନ, ଗପିବା ଛଡ଼ା ତୁ ଆଉ କ'ଣ କରିପାରୁ କହିଲୁ ଭଲା!"

"କାହିଁକି, ତମ ସମସ୍ତଙ୍କଠାରୁ ବେଶି ଖାଇ ପାରେଁ!" ଦୁର୍ଯ୍ୟୋଧନ ଉତ୍ତର ଦେଲା ।

"କେତେ ଖାଇ ପାରିବୁ?" ତା' ସାଙ୍ଗମାନେ ପ୍ରଶ୍ନ କଲେ । ସେଇଠୁ ସ୍ଥିର ହେଲା କି ସେମାନଙ୍କ ଭିତରେ ପିଜୁଳି ଖାଇବାରେ ପ୍ରତିଯୋଗିତା ହେବ । ଗାଁରେ ପିଜୁଳି ଅଭାବ ନଥିଲା । ଟୋଳା ହୋଇ ଆସିଲା । ଅନ୍ୟମାନେ ଚାରି ପାଞ୍ଚଟା ଲେଖାଏଁ ଖାଇ ଅଟକିଗଲେ । କିନ୍ତୁ ଦୁର୍ଯ୍ୟୋଧନ ସାରା ପାଛିଆକଯାକ ଖାଇ ଶେଷ କରିଦେଲା ।

"ବାପ୍‌ରେ ବାପ୍! ତୁ ବାସ୍ତବିକ ଦରବାରୀ ପେଟୁ ହେବାର ଯୋଗ୍ୟ!" ଜଣେ ମନ୍ତବ୍ୟ ଦେଲା ।

କଥାଟି ଦୁର୍ଯ୍ୟୋଧନ ମନକୁ ବେଶ୍ ପାଇଲା ।

"ବସୁନ୍ଧରା"



ଦରବାରୀ ପେଟୁ ବୋଇଲେ ଏଇଆ ବୁଝାଉଥିଲା : ରାଜ୍ୟର ରାଜା ବର୍ଷକେ ଥରେ ଗୋଟାଏ ପେଟୁ-ପ୍ରତିଯୋଗିତା କରାଉଥିଲେ । ଯିଏ ସବୁଠାରୁ ବେଶି ଖାଇ ପାରୁଥିଲା, ସେ ଦରବାରୀ ପେଟୁ ଉପାଧି ପାଉଥିଲା । ବର୍ଷକ ଯାଏ ସେ ରାଜାଙ୍କ ଅତିଥିଭବନରେ ମାଗଣା ଖାଇପିଇ ରହିବାର ସୁଯୋଗ ପାଉଥିଲା । ସେ ବର୍ଷକ ଭିତରେ ତା'ର ଯାହା ଇଚ୍ଛା, ତାକୁ ସେଇଆ ଖାଇବାକୁ ଦିଆ ଯାଉଥିଲା ।

ଦରବାରୀ-ପେଟୁ ହୋଇ ପାରିଲେ କେତେ ସୁଖରେ ସମୟ ଅତିବାହିତ ହେବ, ସେ ସ୍ୱପ୍ନ ଦୁର୍ଯ୍ୟୋଧନକୁ ବିଭୋର କଲା । ସେ ମନେ ମନେ ଗଭୀର ଉତ୍ତେଜନା ଅନୁଭବ କରିବା ସତ୍ତ୍ୱେ ତାକୁ ଗୁପି ରଖିଲା । ବନ୍ଧୁମାନେ ତା' ମନକଥା ବୁଝିପାରି ପରସ୍ପର ଅନାଇ ଆଖି ଟିପି ହସିଲେ ।

ଦୁର୍ଯ୍ୟୋଧନ ତା' ବନ୍ଧୁମାନଙ୍କୁ କହିଲା, "ଭାଇମାନେ! ତମେମାନେ ତେବେ ସେ ଦିଗରେ କିଛି ବ୍ୟବସ୍ଥା କର । ମୁଁ ଯଦି ପ୍ରତିଯୋଗିତାରେ ପ୍ରଥମ ହେବି, ତେବେ ଆମ ଗାଁର ସମ୍ମାନ ବଢ଼ିବ ସିନା!"

"ଗାଁର ସମ୍ମାନ ତ ନିଶ୍ଚୟ ବଢ଼ିବ । ତୋର ବନ୍ଧୁ ହିସାବରେ ଆମର ବି କ'ଣ କମ୍ ଗୌରବ ହେବ!" ସେମାନେ ମନ୍ତବ୍ୟ ଦେଲେ ।

ଦୁର୍ଯ୍ୟୋଧନ ଉତ୍ସାହ ଅନୁଭବ କରି କହିଲା, "ଭାଇମାନେ, ତେବେ ତମେମାନେ ମୋତେ ସାହାଯ୍ୟ କର । ଯଥା ବିହିତ ବ୍ୟବସ୍ଥା କର ।"

"ଆମେ କି ବ୍ୟବସ୍ଥା କରିବା ?"

"ଗାଁର ମୁଖିଆଙ୍କୁ କୁହ, ମୋତେ ବର୍ଷକ ପାଇଁ ଖାଇବା ପିଇବାକୁ ଦେବାର ବନ୍ଦୋବସ୍ତ ଗ୍ରାମ ପାଣ୍ଠିରୁ କରାଯାଉ । ଅଧିକ ଅଧିକ ଖାଇବାର ଅଭ୍ୟାସ ନକଲେ କିପରି ହଠାତ୍ ଗୁଡ଼ାଏ ଖାଇ ପାରିବି ?" ଦୁର୍ଯ୍ୟୋଧନ କହିଲା ।

ଟୋକାମାନେ ଯାଇ ମୁଖିଆଙ୍କୁ ଏକଥା କହିଲେ । ମୁଖିଆ କହିଲେ, "ଆଚ୍ଛା, ତେବେ ମଦରପୁର ଗାଁରୁ ମୁଁ ହନୁମାନ ସିଂହକୁ ଡକାଇବି । ସେ ପାଞ୍ଚବର୍ଷ ତଳେ ଦରବାରୀ



ପେଟୁ ହୋଇଥିଲା । ତା' ସହିତ ଦୁର୍ଯ୍ୟୋଧନ ପ୍ରଥମେ ପ୍ରତିଯୋଗିତା କରୁ । ଯଦି ଦୁର୍ଯ୍ୟୋଧନ ଖାଇବାରେ ତା' ପାଖାପାଖି ସ୍ତରକୁ ଆସିଯିବ, ତେବେ ଗାଁ ତରଫରୁ ତାକୁ ବର୍ଷେ ପର୍ଯ୍ୟନ୍ତ ଖାଇବାର ବ୍ୟବସ୍ଥା କରିଦେବା ।"

ମୁଖିଆଙ୍କ ଏ ସିଦ୍ଧାନ୍ତରେ ଦୁର୍ଯ୍ୟୋଧନ ଖୁସି ହେଲା । ସେ ନିଜ ଘରେ ଯେତେଦୂର ସମ୍ଭବ ବେଶି ବେଶି ଖାଇବାକୁ ଲାଗିଲା । ଘରେ ସମସ୍ତେ ବିରକ୍ତ ହେଲେ, କିନ୍ତୁ ତା' ମନ ଖରାପ ହେବ ବୋଲି କେହି କିଛି କହିଲେ ନାହିଁ ।

ହନୁମାନ ସିଂହ ଡକା ହୋଇ ଆସିଲା । ଯଥା ସମୟରେ ଦୁହିଙ୍କ ଭିତରେ ଜିଲିପି ଖିଆ ପ୍ରତିଯୋଗିତା ଆରମ୍ଭ ହେଲା । ପ୍ରଥମେ ଦୁର୍ଯ୍ୟୋଧନ ଗର୍ବିତ ଭାବରେ ଘୋଷଣା କରିଥାଏ କି ସେ ହନୁମାନ ସିଂହକୁ ହରାଇ ଦେବ । କିନ୍ତୁ ତିରିଶଟି ଜିଲିପି ଖାଇ ସାରିବା ବେଳକୁ ସେ ଯେପରି ଆଉ ହଲ୍‌ଚଲ୍‌ ହୋଇ ପାରିବ ନାହିଁ, ତାକୁ ସେହିପରି ଲାଗିଲା । ହନୁମାନ ସିଂହ ଏକାଗ୍ର ଭାବରେ ଖାଇ ଚାଲିଥାଏ । ଜିଲିପି ଛଣା ହେଉଥାଏ ଓ ତା ପତରରେ ଦିଆ ହେଉଥାଏ । ଚାଳିଶ, ପଚାଶ, ଷାଠିଏଟି ଖାଇସାରିବା ପରେ ବି ହନୁମାନ ସିଂହ ନିର୍ବିକାର ଭାବରେ ଆହୁରି ଖାଇବାକୁ ଅପେକ୍ଷା କରିଥାଏ । ଦୁର୍ଯ୍ୟୋଧନ ବହୁ କଷ୍ଟରେ ଚାଳିଶ ଯାଏ ପହଞ୍ଚିଲା ଓ ଆଉ ଖାଇ ପାରିବ ନାହିଁ ବୋଲି କହିଲା । ହନୁମାନ ସିଂହ ଶହେଟି ଜିଲିପି ଖାଇଲା ।

ସମସ୍ତେ ତାଳି ମାରି ହନୁମାନ ସିଂହର ପ୍ରଶଂସା କଲେ । ମୁଖିଆ ଦୁର୍ଯ୍ୟୋଧନକୁ କହିଲେ, "ଦେଖିଲୁ ତ ? ତୁ ଯଦି ହନୁମାନ ସିଂହ ଯେତିକି ଖାଇଲା ତା'ର ଅଧା ଖାଇଥାନ୍ତୁ, ତେବେ ତୋ କଥା ବିଚାର କରାଯାଇଥାନ୍ତା । କିନ୍ତୁ ତୁ ପାରିଲୁ ନାହିଁ । ତେଣୁ ତୋ ଉପରେ ଆମର ଭରସା ନାହିଁ । ତା'ଛଡ଼ା ଦରବାରି ପେଟୁର ଗାଁ ହିସାବରେ ଖ୍ୟାତି ଲାଭ କରିବାର ଆକାଂକ୍ଷା ବି ଆମର ନାହିଁ ।"

ଦୁର୍ଯ୍ୟୋଧନ ବଡ଼ ଅପମାନ ବୋଧ କଲା । ସମସ୍ତେ ଚାଲିଯିବା ଉତ୍ତାରୁ ସେ ହନୁମାନ

ସିଂହକୁ ପଚାରିଲା, "ଆଚ୍ଛା ଭାଇ, ତମର ଏଭଳି ଦୈବୀଶକ୍ତି କିପରି ଆସିଲା ?"

ଦୁଃଖିତ ଭାବରେ ହନୁମାନ ସିଂହ କହିଲା, "ଏହାକୁ ଦୈବୀଶକ୍ତି କାହିଁକି କହୁଛ ? ଆସୁରିକ ଶକ୍ତି କହିବା ଭଲ ହେବ । ତମେ ଚେଷ୍ଟା କଲେ ଯେ ଏଭଳି ଶକ୍ତି ଲାଭ କରି ପାରିବ ନାହିଁ, ତାହା ନୁହେଁ । ତେବେ ତମକୁ ହରାଇ ଦେଇ ମୁଁ ଖୁବ୍ ଖୁସି ।"

"ହଁ । ତମେ ଜିତିଛ । ଖୁସି ନହେବ କାହିଁକି ?" ଦୁର୍ଯ୍ୟୋଧନ କହିଲା ।

"ନା । ମୁଁ ସେପାଇଁ ଖୁସି ନୁହେଁ । ତମ ଭଳି ଗୋଟିଏ ତରୁଣକୁ ଜୀବନରେ ଅନେକ ଦୁଃଖ ପାଇବାରୁ ରକ୍ଷା କରିଦେଲି, ସେଥିପାଇଁ ମୁଁ ଖୁସି ।"

"ମୁଁ ତ ଦରବାରୀ ପେଟୁ ହୋଇପାରିଲେ ବର୍ଷେ କାଳ ରାଜାଙ୍କ ଅତିଥି ହୋଇ ମନଇଚ୍ଛା ଖୁବ୍ ଖାଇବି । ଏହା ଦୁଃଖ ହେବ କିପରି ?"

"ବର୍ଷେ ସିନା ଖାଇବ, ତା'ପରେ ସାରା ଜୀବନ କ'ଣ କରିବ ? ସେହି ପ୍ରଚୁର ଖାଇବା ଅଭ୍ୟାସ ଯୋଗୁଁ ତେଣିକି କାଢିବାହିଁ ସାର ହେବ ସିନା! ଲୋକେ ଦରବାରୀ ପେଟୁ ବୋଲି କହି ଥଟ୍ଟା କରୁଥିବେ, କିନ୍ତୁ ତମେ ଖାଇବାକୁ ପାଉ ନ ଥିବ !"

ହନୁମାନ ସିଂହର ଏ କଥାରେ ଦୁର୍ଯ୍ୟୋଧନର ହଠାତ୍ ଜ୍ଞାନୋଦୟ ହେଲା । ସେ କିଛି ସମୟ ଚୁପ୍ ରହି ପଚାରିଲା, "ତେବେ ମୋର ତ ବହୁତ ଖାଇବା ଅଭ୍ୟାସ ହୋଇଗଲାଣି । ଏ ଅଭ୍ୟାସ ବଦଳାଇବି କିପରି ?"

"ଉପାୟ ଅଛି । ତମେ କୌଣସି କାମ ହାତକୁ ନିଅ । କାମଦାମରେ ମନ ଦେଲେ ଆଉ ଖାଇବା ଉପରେ ଏତେ ଧାନ ରହିବ ନାହିଁ । କିଛି କରିବାର ନାହିଁ ବୋଲି ଏ ଧରଣର ବାଜେ ଅଭ୍ୟାସ କରି ପକାଇଛ ।"

ହନୁମାନ ସିଂହର ଉପଦେଶ ଦୁର୍ଯ୍ୟୋଧନ ମାନି ନେଲା ଓ ତାକୁ ଧନ୍ୟବାଦ ଦେଲା ।





# ନେଳ ଟୋପି

ପଶ୍ଚିମଘାଟ ପର୍ବତମାଳାର ପାଦ ଦେଶରେ ଶଙ୍ଖଗ୍ରାମ ନାମକ ପଲ୍ଲିରେ ଜୟକୁମାର ନାମକ ଯୁବକ ଥାଏ। ତା'ର ଗୋଟିଏ ନୌକା ଥାଏ। ସେହି ନୌକାରେ ସେ ଲୋକଙ୍କୁ ନଦୀ ପାରି କରାଏ। କିଏ ଗୋଟାଏ ପଇସା ଦିଏ ତ କିଏ ମୁଠିଏ ଚାଉଳ ଦିଏ। ଯାତ୍ରୀ ନଥିବା ବେଳେ ସେ ନୌକାରୁ ଜାଲ ପକାଏ। ମୋଟାମୋଟି ଜୟକୁମାର ସେଥିରେ ଚଳୁଥାଏ।

ଦିନେ ସେ ଦେଖିଲା, ତା' ନୌକାର ତଳ ପଟାଟି ଧିରେ ଧିରେ ଘୋରି ହୋଇ ଗଲଣି। କିଛିଦିନ ପରେ ପଟା ନ ବଦଳାଇଲେ ବିପଦ ହେବ ଜାଣି ସେ ଖଣ୍ଡିଏ ଭଲ କାଠର ସନ୍ଧାନରେ ବଣରେ ପଶିଲା।

ସେ ବଣ ଯେପରି ବିସ୍ତୃତ, ସେହିପରି ଘଞ୍ଚ। ଜୟକୁମାର ଗୋଟିଏ ଉପଯୁକ୍ତ ଗଛ ଖୋଜି ଖୋଜି ଦୂରକୁ ଦୂରକୁ ଅଗ୍ରସର ହେଉଥାଏ। କେତେବେଳେ ସଞ୍ଜ ହେଲଣି, ସେ ବିଷୟରେ ତା'ର ହେତୁ ନଥାଏ। ହଠାତ୍ ସେ ବୁଝିଲା କି ସେ ବଣ ଭିତରେ ଏତେ ଦୂର ଆସିଗଲଣି ଯେ ଘୋର ହେବା ପୂର୍ବରୁ ବାଟ ଠାବ କରି ବାହାରିଯିବା କାଠିକର।

ତଥାପି ସେ ଏଣେତେଣେ ଦୌଡ଼ାଦୌଡ଼ି କରି ବାଟ ପାଇବାର ଚେଷ୍ଟା କଲା। ଫଳରେ ସେ ଆହୁରି ଅଧିକ ହାଲିଆ ହୋଇଗଲା। ତେଣେ ଅଳ୍ପ ଦୂରରୁ ଗୋଟାଏ ବାଘର ରଡ଼ି ଶୁଭିଲା। ତା' ହାଲୁକ ଶୁଖିଗଲା। କେମିତି ହେଲେ ନିରାପଦରେ ରାତିଟି ବିତାଇବ ସେହି ଚିନ୍ତାରେ ବ୍ୟାକୁଳ ହେଲା।

ବର୍ତ୍ତମାନ ତା' ଆଗରେ ପ୍ରଶ୍ନ ହେଲା, ସେ କେଉଁଠାରେ ଆଶ୍ରୟ ପାଇବ! ଗୋଟିଏ ଗଛ ଉପରକୁ ଉଠିଯାଇ ଯେତେଦୂର ଆଖି ପାଇଲା ସେ ଅନାଇ ଦେଖିଲା, କାହିଁ ଗାଁ ଗଣ୍ଡା

ପଚିଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ



ଦେଖାଯାଉ ନାହିଁ । ଏଣେ ଅନ୍ଧାର ବି ଘନ ହୋଇ ଆସୁଥାଏ । ସେ ଭୀଷଣ ଚିନ୍ତାରେ ପଡ଼ିଲା । ଦୈବାତ୍ ତା' ଆଖି ଗୋଟାଏ ବାଉଁଶ ଝାଡ଼ ପାଖକୁ ଚାଲିଗଲା । ସେ ଦେଖିଲା କ୍ଷୀଣ ଭାବରେ ଧୂଆଁ ଉପରକୁ ଉଠୁଛି ।

ଗଛରୁ ଓହ୍ଲାଇ ଜୟକୁମାର ସେହି ବାଉଁଶ ଝାଡ଼ ଆଡ଼େ ଚାଲିଲା । ଦେଖିଲା, ସେଠାରେ ଗୋଟିଏ ଛୋଟିଆ ଘର ରହିଛି । ତା' ପିଣ୍ଡରେ ପ୍ରାଣ ପଶିଲା । ସେ ଧୀରେ ଧୀରେ ଘରର କବାଟରେ ହାତ ମାରିଲା । କବାଟ ଖୋଲିଲା ଜଣେ ବୁଢ଼ା ।

"ଆଜ୍ଞା, ଖଣ୍ଡିଏ କାଠ ପାଇଁ ବଣ ଭିତରେ ପଶିଥିଲି ଯେ, ବାଟବଣା ହୋଇ ଏଣେ ତେଣେ ବୁଲୁଛି । ଏଠି ପାଖରେ ଗାଁ ଗଣ୍ଡା କିଛି ଅଛି ?" ଜୟକୁମାର ପଚାରିଲା ।

"ଚାରି ପାଞ୍ଚକୋଶ ଭିତରେ କିଛି ନାହିଁ ।" ବୁଢ଼ା କହିଲା ।

"ବର୍ତ୍ତମାନ ମୋ ପକ୍ଷରେ ଚାରି ପାଞ୍ଚକୋଶ ବାଟ ଯିବା ସମ୍ଭବ ନୁହେଁ । ମୋତେ ଦୟାକରି ରାତିକ ପାଇଁ ଆଶ୍ରୟ ଦେବେ ?"

"ହଉ, ଭିତରକୁ ଆସ ।" ଜୟକୁମାର ଭିତରେ ପଶିବା ମାତ୍ରେ ବୁଢ଼ା କବାଟ ବନ୍ଦ କରିଦେଲା ଓ ତା' ସ୍ତ୍ରୀକୁ ସବୁ କଥା କହିଲା । କିଛି ସମୟ ପରେ ବୁଢ଼ୀ ସେ ଦୁଇଜଣଙ୍କ ପାଇଁ ଖାଦ୍ୟ ପରଷି ଦେଲା । ଜୟକୁମାର ସେଭଳି ସୁଖାଦ୍ୟ ଖାଇ ନଥିଲା !

ଘରର ଗୋଟିଏ କୋଣରେ ଜୟକୁମାର ପାଇଁ ବୁଢ଼ାବୁଢ଼ୀ ମଶିଣା ପାରିଦେଲେ । ଜୟକୁମାର ଶୋଇଲା ସତ, କିନ୍ତୁ ତାକୁ ନିଦ ହେଲା ନାହିଁ । ଏ ବଣ ଭିତରେ ବୁଢ଼ାବୁଢ଼ୀ ଏପରି ସୁଖାଦ୍ୟ ପାଉଛନ୍ତି କିପରି ? ସେ ଏହିକଥା ଭାବି ଭୀଷଣ ବିସ୍ମୟ ଅନୁଭବ କଲା ।

ମଝି ରାତିରେ ସେ ଦେଖିଲା, ବୁଢ଼ା ଧୀରେ ଧୀରେ ଗୋଟିଏ କାଠ ପେଡ଼ି ଖୋଲୁଛି । ପେଡ଼ି ଖୋଲି ବୁଢ଼ା ତହିଁ ଭିତରୁ ଗୋଟିଏ ନେଲି ଟୋପି ବାହାର କରି ମୁଣ୍ଡରେ ଲଗାଇଲା ଓ କହିଲା, "ରାଜାଙ୍କ ରୋଷେଇ-

ଘର !" ସଙ୍ଗେ ସଙ୍ଗେ ବୁଢ଼ା ଅଦୃଶ୍ୟ ହୋଇଗଲା ।

ଏହା ପରେ ବୁଢ଼ୀ ଆସି ପେଡ଼ି ଖୋଲି ଆଉ ଖଣ୍ଡିଏ ଟୋପି କାଢ଼ି ତାକୁ ମୁଣ୍ଡରେ ଦେଇ ଏକା କଥା କହିଲା ଓ ଅଦୃଶ୍ୟ ହୋଇଗଲା ।

ଜୟକୁମାରକୁ ଯେତିକି ବିସ୍ମୟ ଲାଗୁଥାଏ, ସେତିକି କୌତୂହଳ ବି ଲାଗୁଥାଏ । ସେ ଉଠିଯାଇ ପେଡ଼ି ଖୋଲି ଦେଖିଲା, ଆହୁରି ଖଣ୍ଡିଏ ନେଳି ଟୋପି ରହିଛି । ସେ ଖଣ୍ଡିକ ମୁଣ୍ଡରେ ଦେଇ ସେ ବି କହିଲା, "ରାଜାଙ୍କ ରୋଷେଇଘର !" ସଙ୍ଗେ ସଙ୍ଗେ ତା' ମୁଣ୍ଡ କେମିତି ହୋଇଗଲା । ମନେ ହେଲା ତାକୁ କିଏ ଅବା ବିଜୁଳି ବେଗରେ କୁଆଡ଼େ ଉଡ଼ାଇ ନେଉଛି । ମୁହୂର୍ତ୍ତକ ପରେ ଆଖି ଖୋଲି ସେ ଦେଖିଲା, ସେ ଯାଇ ରାଜାଙ୍କ ରୋଷେଇ ଘର ଭିତରେ ଠିଆ ହୋଇଛି । ବୁଢ଼ା ବୁଢ଼ୀ ତା' ଆଗରେ ଖାଦ୍ୟଦ୍ରବ୍ୟ ଗୁଡ଼ିକ ବାଛୁଛନ୍ତି । ତାକୁ ଦେଖି ବୁଢ଼ା ବୁଢ଼ୀ ଚଟାପଟ୍ ଟୋପିଟିମାନ ମୁଣ୍ଡରେ ଦେଇ କହିଲେ, "ଦୁମୁକା ବଣ, ଦୁମୁକା ବଣ !" ସଙ୍ଗେ ସଙ୍ଗେ ସେ ଦୁହେଁ ଅଦୃଶ୍ୟ ହୋଇଗଲେ ।

ଜୟକୁମାର ରୋଷେଇ ଘରେ ଯାହା ଥିଲା ମନ ଇଚ୍ଛା ଖାଇଲା । ହଠାତ୍ ତା' ଆଖିରେ ପଡ଼ିଲା କୌଣସି ପାନୀୟ । ସେ କୌତୂହଳୀ ହୋଇ ତାକୁ ପିଇ ଦେଲା । ତାହା ଥିଲା ମଦ । କିଛି ସମୟ ଭିତରେ ସେ ନିଶାରେ ଭୋଳ ହୋଇ ଗୀତ ବୋଲି ଡଳେ ପଡ଼ି ନେଡ଼ା ହରାଇଲା । ଯେତେବେଳେ ତା' ଚେତା ଫେରିଲା, ସେ ଦେଖିଲା ତାକୁ ରାଜାଙ୍କ ଆଗରେ ହାଜର କରା ହୋଇଛି ।



"ମହାରାଜ ! ରାତି ପରେ ରାତି ଯେଉଁ ଯାଦୁକର ଡାକୁ ତୁମଙ୍କ ମଣୋହି ଘରୁ ଚୋରି କରୁଥିଲା, ଇଏ ସେଇ ଡାକୁ । ଆମେ ମାଡ ଦେଇ ଧରିଛୁଁ ।" ଜଗୁଆଳମାନେ କହିଲେ ।

"ନେଇଯାଅ । ଏହାକୁ ପ୍ରାଣଦଣ୍ଡ ଦିଅ ।" ରାଜା ହୁକୁମ ଦେଲେ ।

ସେତେବେଳେ ଡାକୁମାନଙ୍କୁ ଖଣ୍ଡିଏ ଶକ୍ତ କାଠରେ ବାନ୍ଧି ତା' ଗୁରୁପଟେ ଅନ୍ୟ କାଠକାଠିରେ ନିଆଁ ଲଗାଇ ତାକୁ ମରା ହେଉଥିଲା । ଜୟକୁମାରକୁ ବଧ ଭୂମିକୁ ନେଇଯାଇ ସେହି ବ୍ୟବସ୍ଥା କରାଗଲା । ଯାଦୁକର ଡାକୁକୁ ଦେଖିବା ପାଇଁ ଶହ ଶହ ଲୋକ ଆସିଥାନ୍ତି ।

ଜୟକୁମାର ବୁଝିଲା, ମୃତ୍ୟୁ ଅନିବାର୍ଯ୍ୟ । "ତୋର ଅନ୍ତିମ ଇଚ୍ଛା କଣ ଅଛି ?" ରାଜକର୍ମଚାରୀମାନେ ପ୍ରଶ୍ନ କଲେ ।

"ମୋର ଗୋଟିଏ ନେଳି ଟୋପି ମୋରେଇ ଘରେ ପଡ଼ିଥିବ । ତାହା ମୋର ଅତି ପ୍ରିୟ । ତାକୁ ମୁଣ୍ଡରେ ଦେଇ ମୁଁ ମରିବାକୁ ଚାହେଁ ।" ଜୟକୁମାର କହିଲା ।

ସମସ୍ତେ ହସିଲେ । ଜଣେ ଦୁଇଜଣ କର୍ମଚାରୀ ଦୌଡ଼ିଯାଇ ଟୋପିଟି ନେଇ ଆସି ଜୟକୁମାର ମୁଣ୍ଡରେ ଥାପିଲେ ଓ ତା'ପରେ କାଠ ସ୍ତୁପରେ ନିଆଁ ଧରାଇ ଦିଆଗଲା ।

ଜୟକୁମାର କହିଲା, "କୃଷ୍ଣଗିରି !" ସଙ୍ଗେ ସଙ୍ଗେ ଯେଉଁ କାଠରେ ସେ ବନ୍ଧା ହୋଇଥିଲା, ସେ କାଠ ସମେତ ସେ ଅଦୃଶ୍ୟ ହୋଇଗଲା ଓ କୃଷ୍ଣଗିରି ପାହାଡ ଉପରେ ପହଞ୍ଚିଲା । ସେ ପାହାଡ଼ ତା ଗାଁ ପାଖରେ ।

"କହୋ, ଇଏ କ'ଣ ?" ଜଣେ ଗ୍ରାମବାସୀ ତାକୁ ଦେଖି ପକାଇ ପଚାରିଲା ।

"ଆରେ ଭାଇ, ଏ ନୌକାର ତଳି-ପଟା ପାଇଁ ଏ ଖଣ୍ଡିକ ଖୋଜି ବାହାର କଲି । କାଳେ କଷ୍ଟ ହେଲେ ପକାଇଦେଇ ଆସିବ, ତେଣୁ କେତେକ ଲୋକଙ୍କୁ କହି ଏହା ମୋ ପିଠିରେ ବାନ୍ଧି ଦେଲି ଓ ନେଇ ଆସିଲି ।" ଜୟକୁମାର କହିଲା ।

ଗ୍ରାମବାସୀଟିର ସାହାଯ୍ୟରେ ଜୟକୁମାର କାଠଟି ଖୋଲି ଘରକୁ ନେଇ ଆସିଲା ଓ ଦେଖିଲା, ତାହା ବାସ୍ତବିକ ବହୁତ ଶକ୍ତ ସୁନ୍ଦର କାଠ !



# ବିକି ଜାଣିଥିଲେ--

ଗୋବିନ୍ଦ ଲୁଗା ଦୋକାନ କରିଥାଏ । ଥରେ ସେ ସହରରୁ ଖଣ୍ଡିଏ ଦାମିକା ପଶମ ଚଦର ନେଇ ଆସିଲା । ତା' ଶଳା କତେଇ ବୁଲି ଆସିଥାଏ । ସେ କହିଲା, "ଗୋବିନ୍ଦ ଭାଇ, ଏ ଶାଲ୍ କିଏ କିଣିବ ?" "ଆରେ ଭାଇ, ବିକି ଜାଣିଥିଲେ ସବୁ ସମ୍ଭବ ।" ଏହା କହି ଗୋବିନ୍ଦ କତେଇକୁ ଦୂରରୁ ଆସୁଥିବା ଜଣେ ଭଦ୍ରଲୋକଙ୍କୁ ଦେଖାଇ ଦେଇ ଚୁପ୍ ଚୁପ୍ କିଛି କହିଲା । କତେଇ ସଙ୍ଗେ ସଙ୍ଗେ ବାହାରି ଚାଲିଗଲା ।

ଭଦ୍ରଲୋକଟି ମହାଜନ । ଗୋବିନ୍ଦ ତାଙ୍କୁ ସ୍ୱାଗତ କରି ଆଣି କହିଲା, "ଆପଣଙ୍କୁ ଏ ଚଦର ଖଣ୍ଡିକ ଦେଖାଇବାକୁ ଚାହୁଁ ଥିଲି । ମୂଲ୍ୟ ଦୁଇଶହ ଟଙ୍କା ।" "ମୁଁ ଏହାକୁ କିଣିବି ବୋଲି ଆଶା କରି ନାହିଁ ।" ମହାଜନ କହିଲେ । "ଆପଣ ଥରେ ଖାଲି ଏହାକୁ ଘୋଡ଼ି ହୋଇ ବୁଲି ଆସନ୍ତୁ ।" ଖୁସି ହୋଇ ମହାଜନ ଚଦର ଘୋଡ଼ି ହୋଇ ବାହାରି ଗଲେ । ଅଳ୍ପ ଦୂରରେ କତେଇ ତାଙ୍କୁ ଲମ୍ବ ନମସ୍କାର ପକାଇ ହାତଯୋଡ଼ି ଠିଆ ହେଲା । ଆଶ୍ଚର୍ଯ୍ୟ ହୋଇ ମହାଜନ ପଚାରିଲେ, "ତମକୁ ତ ଚିହ୍ନି ପାରୁନାହିଁ ।" "ହଜୁର୍, ମୁଁ କିନ୍ତୁ ଆପଣଙ୍କୁ ଚିହ୍ନେ । ଆପଣ ରାଜା ସାହେବ ! ଏଭଳି ଚଦର ଆଉ କିଏ ବ୍ୟବହାର କରେ ?" ମହାଜନ ଗୋବିନ୍ଦ ଦୋକାନକୁ ଆସି ଚଦରଟି କିଣି ନେଲେ ।





# କାକୁଡ଼ି ବେପାରୀ

ଦିନେ ସୁଲ୍‌ତାନ ଘୋଡ଼ା ଚଢ଼ି ଏକୁଟିଆ ଶୀକାର କରିବାକୁ ଯାଉଥିଲେ। ବାଟରେ ଦେଖିଲେ ଗଧ ପିଠିରେ କିଛି ବୋଝ ଲଦି ଜଣେ ଗାଉଁଲି ଲୋକ ସହର ଆଡ଼େ ଚାଲିଛି।

ଲୋକଟି ସହ କଥା କହିବାକୁ ସୁଲ୍‌ତାନ୍‌ଙ୍କର ଇଚ୍ଛା ହେଲା। "କହୋ ଭାଇ, କୁଆଡ଼େ ଚାଲିଛ ?" ସେ ପଚାରିଲେ।

"ବାବୁ ! ସୁଲ୍‌ତାନ୍‌ଙ୍କୁ ସଲାମ ଦେବାକୁ ଯାଉଛି।" ଲୋକଟି କହିଲା।

"ହଠାତ୍ ସୁଲ୍‌ତାନ୍‌ଙ୍କୁ ସଲାମ ଦେବାର ଦରକାର କ'ଣ ପଡ଼ିଲା ?" ସୁଲ୍‌ତାନ ପଚାରିଲେ।

"ମୋ ବାଡ଼ିରେ କିଛି କାକୁଡ଼ି ଫଳିଥିଲା। ନୂଆ କରି। ଶୁଣିଲି ସୁଲ୍‌ତାନ୍ ବହୁତ ଦିଲ୍‌ଦାର୍ ଲୋକ। ତାଙ୍କୁ ଭେଟି ଦେଲେ କିଛି ମୋଟା ପୁରସ୍କାର ମିଳିବ।" ଲୋକଟି କହିଲା।

ସୁଲତାନ୍ ଏହା ଶୁଣି ଅଟ୍ଟହାସ୍ୟ କଲେ।

ଲୋକଟି ପଚାରିଲା, "ହସିଲେ କାହିଁକି ଆଜ୍ଞା ? ସୁଲତାନ୍ କ'ଣ ଦିଲ୍‌ଦାର୍ ନୁହନ୍ତି ? ଯାହା ଶୁଣିଛି ତାହା କ'ଣ ଭୁଲ ?" ଲୋକଟି ପଚାରିଲା।

"ସୁଲ୍‌ତାନ୍‌ଙ୍କୁ କାକୁଡ଼ି ଦେବ ! ସେଥିରେ ସେ କେତେ ଟଙ୍କା ପୁରସ୍କାର ଦେବେ ବୋଲି ଭାବୁଛ ?"

"ଅନ୍ତତଃ ହଜାରେ ଟଙ୍କା !"

"ଯଦି ସେ ସେତେ ନ ଦେବେ ?"

"ତେବେ କହିବି ପାଞ୍ଚଶହ ଦେଲେ ଚଳିବ !"

"ଯଦି ସେ ସାମାନ୍ୟ କାକୁଡ଼ି ପାଇଁ ଏତେ ଦେବାକୁ ରାଜି ନ ହେବେ ?" ସୁଲ୍‌ତାନ୍ ପଚାରିଲେ।

"ତେବେ କହିବି ଅଢ଼େଇ ଶହ ଦିଅନ୍ତୁ ।" ଲୋକଟି ଉତ୍ତର ଦେଲା ।

"ଯଦି ସୁଲ୍‌ତାନ୍ ସେତେ ନ ଦେବେ ?"

"ତେବେ ଦେଢ଼ ଶହ ଦେଲେ ମୁଁ ଖୁସି ହୋଇଯିବି ।"

"ଯଦି ସେତେ ନ ଦେବେ ?"

"ତେବେ ଶହେ ଦେଲେ ଚଳିବ !"

"ଯଦି ସାମାନ୍ୟ କାକୁଡ଼ି ପାଇଁ ଶହେ ବହୁତ ଅଧିକ ହୋଇଗଲା ବୋଲି ସେ ଭାବିବେ ?"

"ତେବେ ପଚିଶ ତ ଦେବେ !"

"ଯଦି ସେତେ ନ ଦେବେ ?"

"ତେବେ ମୋ ଗଧକୁ ତାଙ୍କ ଦରବାର ଭିତରକୁ ଠେଲି ଦେଇ ଚାଲି ଆସିବି ।" ଲୋକଟି କହିଲା ।

ସୁଲ୍‌ତାନ୍ ହସିଲେ ଓ ସଙ୍ଗେ ସଙ୍ଗେ ଘୋଡ଼ା ଛୁଟାଇ ଦେଲେ ।

ସୁଲ୍‌ତାନ୍ ଆଉ ଶୀକାର କରିବାକୁ ଜଙ୍ଗଲକୁ ଗଲେ ନାହିଁ । ଗୋଟାଏ ସିଧା ବାଟ ଧରି ନିଜ ମହଲକୁ ଫେରିଗଲେ ଓ ସେଠାରେ ଥିବା ଦରୁଆନ୍‌କୁ କହିଲେ, "ଦେଖ, ଗୋଟାଏ ଲୋକ ଗଧରେ କିଛି କାକୁଡ଼ି ବୋଝେଇ କରି ଆସିବ । ତାକୁ ବାଟ ଛାଡିଦେବ ।"

ଏହାପରେ ସେ ଯାଇ ଲୁଗାପଟା ବଦଳାଇ ଗାଦିରେ ବସିଲେ । କିଛି ସମୟ ପରେ ଲୋକଟି ଆସି ପହଞ୍ଚିଲା । ଦରୁଆନ୍ ତାକୁ ନେଇ ସୁଲ୍‌ତାନ୍‌ଙ୍କ ପାଖରେ ପହଞ୍ଚାଇ ଦେଲା ।



ଲୋକଟି ସୁଲତାନ୍‌ଙ୍କୁ ନୂଆ ବେଶରେ ଦେଖି ଚିହ୍ନି ପାରିଲା ନାହିଁ ।

"ହଜୁର୍ ! ମୋ କ୍ଷେତର ପ୍ରଥମ ଫସଲ କାକୁଡ଼ି ଧରି ଆସିଛି । ଆପଣଙ୍କୁ ଏହା ଦେଇ କିଛି ପୁରସ୍କାର ଆଶା କରୁଛି ।"

"କେତେ ଆଶା କରୁଛ ?"

"ହଜାରେ ଟଙ୍କା ।"

"ସାମାନ୍ୟ କାକୁଡ଼ି ପାଇଁ ହଜାରେ !" ସୁଲ୍‌ତାନ୍ କହିଲେ ।

"ତେବେ ପାଞ୍ଚଶହ ଦିଅନ୍ତୁ ହଜୁର !"

"ପାଞ୍ଚଶହ !!"

"ତେବେ ଅଢ଼େଇ ଶହ ଦେବା ହେଉନ୍ତୁ ।"

"ଅଢ଼େଇ ଶହ !" ସୁଲତାନ୍ କହିଲେ !

"ତେବେ ଶହେ ଦେଲେ ଚଳିବ ।"

"ଶହେ ତ ବହୁତ ବେଶି ହୋଇ ଯାଉଛି ।"

"ପଚିଶ ଟଙ୍କା ଦିଅନ୍ତୁ ହଜୁର !"

"ପଚିଶ ବି ବହୁତ ହେଲା !"

ଲୋକଟି ଦୀର୍ଘନିଶ୍ୱାସ ଛାଡ଼ି କହିଲା, "ହଜୁର୍ ! ବାଟରେ ଗୋଟାଏ ପାପୀ ସହ କଥାବାର୍ତ୍ତା ହୋଇଥିଲା । ତାହାରି ପ୍ରଭାବରୁ ମୋର ଏ ଦୁର୍ଭାଗ୍ୟ । ନହେଲେ କି ହଜୁରଙ୍କ ଭଳି ମହତ୍ ଲୋକ ମୋ ସହ ଦର ଦସ୍ତୁର କରନ୍ତେ ?"

ସୁଲତାନ୍ ହସିଲେ । ସେ ହସିବା ମାତ୍ରେ ଲୋକଟି ଜାଣିଗଲା ସିଏ କିଏ । ସେ ପ୍ରଥମେ ଟିକିଏ ଶଙ୍କି ଯାଇ ତା'ପରେ କହିଲା, "ହଜୁର୍ ! ଯାହା ମର୍ଜି କରନ୍ତୁ । ଗଧଟି ଭିତରେହିଁ ବନ୍ଧା ହୋଇଛି । ଅତଏବ..."

ସୁଲ୍‌ତାନ୍ ନିର୍ଦ୍ଦେଶ ଦେଲେ କି ଲୋକଟିକୁ ହଜାରେ ଟଙ୍କା ପରେ ପୁଣି ପାଞ୍ଚଶହ ଯୁକ୍ତ ଅଢ଼େଇଶହ ଯୁକ୍ତ ଶହେ ଯୁକ୍ତ ପଚିଶ ଟଙ୍କା ଦିଆଯାଉ !

ଲୋକଟି ସୁଲ୍‌ତାନ୍‌ଙ୍କ ପ୍ରଶସ୍ତି ଗାଇ ଆନନ୍ଦରେ ଗଧଟିକୁ ଧରି ବିଦାୟ ନେଲା ।





# ଶିବ ପୁରାଣ

ମାତା ପାର୍ବତୀଙ୍କ କଥା ଶୁଣିବା ପରେ ଗଣେଶ ମାମୁଁ ଶ୍ରୀବିଷ୍ଣୁଙ୍କ ପାଖକୁ ଗଲେ । ସେ କହିଲେ, "ଭଗବାନ୍, କୁମାରଙ୍କର ମୟୂର ବାହନ ଓ ମୋର ମୂଷା । ମୁଁ କିପରି ତାଙ୍କ ସହିତ ପ୍ରତିଯୋଗିତା କରିପାରିବି ? ଏଇଟା ଅନ୍ୟାୟ ନୁହେଁ ?"

ବିଷ୍ଣୁ କହିଲେ, "ବତ୍ସ, ତୁମେ ଚିନ୍ତା କରନାହିଁ । ତମେ ଲକ୍ଷେଥର ଶିବ ପଞ୍ଚାକ୍ଷରୀ ଜପ କରିବା ପରେ ପାର୍ବତୀ ଓ ପରମେଶ୍ୱରଙ୍କୁ ତିନିଥର ପରିକ୍ରମା କରିବ ତେବେ ପୃଥିବୀ ପରିକ୍ରମାର ଫଳ ତମେ ପାଇପାରିବ ।"

ଗଣେଶ ସ୍ନାନ କରି ଏକ କୁଶାସନ ଉପରେ ବସି ଶିବ ପଞ୍ଚାକ୍ଷରୀ ଜପ କରିବାକୁ ଲାଗିଲେ । ଇତିମଧ୍ୟରେ କାର୍ତ୍ତିକେୟ ପ୍ରଥମ ତୀର୍ଥକୁ ଯାଇ ଦେଖିଲେ, ସେଇମାତ୍ର ଗଣେଶ ସ୍ନାନ କରି ସେଠାରୁ ଯାଉଛନ୍ତି । ମୂଷାର ପାଦଚିହ୍ନ ପଡ଼ିଛି । କାର୍ତ୍ତିକେୟ ସେଠାକାର ତୀର୍ଥଯାତ୍ରୀମାନଙ୍କୁ ପଚାରିଲେ, "ଭଦ୍ରଜନେ, ଏଠାକୁ ଜଣେ ସ୍ଥୂଳକାୟ ବ୍ୟକ୍ତି ମୂଷା ଉପରେ ଚଢ଼ି ଆସିଥିଲେ କି ?"

"ଆଜ୍ଞା, ହଁ, ସିଏ ତ ଏବେ ସ୍ନାନ କରି ଏଠାରୁ ଆପଣ ଆସିବା ଆଗରୁ ଚାଲିଗଲେ । ସେ ସ୍ନାନ କରି ଆମକୁ ଅନେକ ସ୍ୱର୍ଣ୍ଣମୁଦ୍ରା ଦାନ ଦେଇଗଲେ ।" ତୀର୍ଥଯାତ୍ରୀମାନେ କହିଲେ ।

"ବାଃ, ସ୍ଥୂଳକାୟ, ନିଦ୍ରାଳୁ ଯଦି ଏତେ ଶୀଘ୍ର ଏଠାକୁ ଆସିଗଲା, ତେବେ ମୁଁ ବରଂ ଏଠାରୁ ଶୀଘ୍ର ଯାଏ । ସ୍ନାନ କରି ସମୟ ନଷ୍ଟ ନକରି ଦ୍ୱିତୀୟ ତୀର୍ଥକୁ ଯାଏ ।" ତା'ପରେ



କାର୍ତ୍ତିକେୟ ଯେତେ ତୀର୍ଥକୁ ଯାଉଥା'ନ୍ତି ତାଙ୍କର ଅନୁଭବ ହେଉଥାଏ ଯେ ଗଣେଶ ସେଠାକୁ ତାଙ୍କ ପୂର୍ବରୁ ଆସିଥିଲେ ।

ଇତମଧ୍ୟରେ ଗଣେଶ ଶିବପଞ୍ଚାକ୍ଷରୀ ଜପିବା ପରେ ଈଶ୍ୱରପାର୍ବତୀଙ୍କୁ ତିନିଥର ପରିକ୍ରମା କରି ସେମାନଙ୍କ ସମ୍ମୁଖରେ ହାତ ଯୋଡ଼ି ଠିଆ ହୋଇଥା'ନ୍ତି ।

ଅନ୍ୟ ଦେବତାମାନେ କୁହାକୁହି ହେଉଥା'ନ୍ତି, "ଦେଖ ଗଣେଶ କୁଆଡ଼େ ନଯାଇ ଅଧିପତିର ପଦବୀକୁ ମାରିନେବାକୁ ବସିଛନ୍ତି ।"

କାର୍ତ୍ତିକେୟ ସେତିକିବେଳେ ଲେଉଟି ଆସି କହିଲେ, "ମୁଁ ପ୍ରକୃତରେ ଅଧିପତି ପଦ ପାଇବା ପାଇଁ ଯୋଗ୍ୟ ନୁହେଁ, ଆପଣମାନେ ଗଣେଶଙ୍କୁହିଁ ସେ ପଦବୀ ଦେଇ ଦିଅନ୍ତୁ ।"

ଶିବ, ପାର୍ବତୀ, ଦେବତାମାନେ ଓ ଗଣମାନେ ପଚାରିଲେ, "ଏପରି କାହିଁକି କହିଲ ?"

"ମୁଁ ପୃଥିବୀର ସବୁ ତୀର୍ଥକ୍ଷେତ୍ରକୁ ଯାଇଥିଲି କିନ୍ତୁ କେଉଁଠାରେ ହେଲେ ସ୍ନାନ କରିନାହିଁ । କାରଣ ଯେଉଁଠି ପହଞ୍ଚେ ଦେଖେ ମୋ ପୂର୍ବରୁ ଗଣେଶ ସେ ତୀର୍ଥରେ ସ୍ନାନ କରି ଫେରିଛନ୍ତି । ତୀର୍ଥଯାତ୍ରୀମାନେ ମଧ୍ୟ ସେଇ କଥା କହିଲେ । ତେଣୁ ରୁଦ୍ରଗଣଙ୍କ ଉପରେ ସେଇହିଁ ଅଧିପତି ପଦ ପାଆନ୍ତୁ ।" କାର୍ତ୍ତିକେୟ କହିଲେ ।

ଦେବତାମାନେ ଓ ରୁଦ୍ରଗଣ କାର୍ତ୍ତିକେୟଙ୍କ କଥାକୁ ସ୍ୱୀକାର କରି ନେଲେ । ତା'ପରେ ଗଣାଧିପତି ଭାବରେ ତାଙ୍କର ଅଭିଷେକ ହେବାର ଆୟୋଜନ କରାଗଲା ।

ରୁଦ୍ରଗଣ ଶୀଘ୍ର ଯାଇ ନଦୀମାନଙ୍କରୁ ଓ ସମୁଦ୍ରରୁ ଜଳ ନେଇ ଆସିଲେ । ଉତ୍ସବ ପାଇଁ ଗରୁଡ଼, ଗନ୍ଧର୍ବ, କିନ୍ନର, ନାଗ ଓ ଭୂଲୋକବାସୀମାନଙ୍କୁ ନିମନ୍ତ୍ରଣ କରାଗଲା । ବୃହସ୍ପତି ଉତ୍ସବ ପାଇଁ ମୁହୂର୍ତ୍ତ ନିର୍ଣ୍ଣୟ କଲେ । ଶୁଭ ମୁହୂର୍ତ୍ତରେ ଗଣପତି ଓ ତାଙ୍କ ପତ୍ନୀ ଜୟଲକ୍ଷ୍ମୀଙ୍କୁ ନବରତ୍ନ ଖଚିତ ଏକ ସିଂହାସନ ଉପରେ ବସାଇ ଦିଆଗଲା । ତା'ପରେ ସମସ୍ତ ରୁଦ୍ରଗଣଙ୍କ ଉପରେ ତାଙ୍କୁ ଅଧିପତି ଭାବରେ




ଅଭିଷେକ କରାଗଲା । ଶିବ ପାର୍ବତୀ ଗଣେଶ ଓ ଜୟଲକ୍ଷ୍ମୀଙ୍କୁ ଆଶୀର୍ବାଦ ଦେଲେ । ଅଭିଷେକ ପରେ ଶିବ ଓ ପାର୍ବତୀ ଦୁଇ ପୁତ୍ରଙ୍କୁ ଡ଼ାକି କହିଲେ, "ବର୍ତ୍ତମାନ ତୁମେ ଦୁଇଭାଇ ତିନିଲୋକ ଉପରେ ଶାସନ କର । ଯିଏ ତୁମଙ୍କୁ ସ୍ମରଣ କରିବ, ତୁମଙ୍କୁ ପୂଜା କରିବ ବା ତୁମପାଇଁ ତପସ୍ୟା କରିବ, ତୁମେମାନେ ସେହି ବ୍ୟକ୍ତିର ସହାୟତା କରିବ ଓ ତା'ର ସମସ୍ତ କାର୍ଯ୍ୟରେ ସାଫଲ୍ୟ ପ୍ରଦାନ କରିବ ।"

ତାରକାସୁର ତ ପୂର୍ବରୁ ମରିଥିଲା । ତା'ର ଥିଲେ ତିନୋଟି ଶିଶୁପୁତ୍ର । ସେମାନଙ୍କ ନାମ ହେଲା, ତାରକାକ୍ଷ, କମଲାକ୍ଷ ଓ ବିଦ୍ୟୁନ୍ମାଳୀ । ତାରକାସୁରର ପତ୍ନୀ ତିନିପୁତ୍ରଙ୍କୁ ନେଇ ପାତାଳପୁରକୁ ଗଲା । ସେଠାରେ ଶୁକ୍ରାଚାର୍ଯ୍ୟଙ୍କ ସହାୟତାରେ ସେମାନେ ନାନା ବିଦ୍ୟା ହାସଲ କଲେ । ବିଶେଷତଃ ଯୁଦ୍ଧ ବିଦ୍ୟାରେ ତିନିଜଣଯାକ ଖୁବ୍ ପାରଙ୍ଗମ ହୋଇ ଉଠିଲେ । କାଳକ୍ରମେ ସେମାନେ ବଡ଼ ବଡ଼ ଯୋଦ୍ଧା ଭାବରେ ଖ୍ୟାତି ଅର୍ଜ୍ଜନ କଲେ । ସେମାନେ ନିଜ ମା'ଠାରୁ ଶୁଣିଲେ ତାରକାସୁରର ଜୀବନ ବୃତ୍ତାନ୍ତ । ସବୁ ଶୁଣିସାରି ପିତାଙ୍କ ମୃତ୍ୟୁର ପ୍ରତିଶୋଧ କିପରି ନେବେ ତାହାହିଁ ସେମାନେ ଚିନ୍ତା କରିବାକୁ ଲାଗିଲେ । ସେମାନଙ୍କୁ ଚିନ୍ତିତ ଦେଖି ସେମାନଙ୍କର ମା' ପରାମର୍ଶ ଦେଇ କହିଲେ, "ପୁତ୍ରଗଣ, ପ୍ରତିଶୋଧ ନେବା ପୂର୍ବରୁ ତୁମେମାନେ ନିଜେ ପ୍ରଥମେ ଶକ୍ତିଶାଳୀ ହେବା ଦରକାର । ସେଥିପାଇଁ ତପସ୍ୟାର ପ୍ରୟୋଜନ । ଯାଅ ତିନିଜଣଯାକ ତପସ୍ୟାରେ ପ୍ରଥମେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ବର ମାଗ ।"

ତା'ପରେ ତିନିଭାଇ ମେରୁପର୍ବତକୁ ଯାଇ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେଠାରେ କଠିନ ତପସ୍ୟା କଲେ ।

କିଛି କାଳ ଅନ୍ତେ ବ୍ରହ୍ମା ସେମାନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ସେମାନଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଓ କହିଲେ, "ତୁମେମାନେ କି ବର ଚାହୁଁଛ ?"

"ଦେବ, ଆମେ ଚାହୁଁଛୁ ଅମର ବର । ଆମର କେବେ ମଧ୍ୟ ମୃତ୍ୟୁ ହେବ ନାହିଁ ।" ସେମାନେ କହିଲେ ।




"ସେ ବର ଦେବାର ଶକ୍ତି ମୋର ନାହିଁ । କିନ୍ତୁ ତମେ ମୃତ୍ୟୁ ପାଇଁ ଯେ କୌଣସି ଏକ ସର୍ତ୍ତ ରଖି ବର ମାଗ ମୁଁ ଅବଶ୍ୟ ଦେବି ।" ବ୍ରହ୍ମା କହିଲେ ।

"ଦେବ, ଏମିତି ଏକ ରଥ ଥିବ ଯାହା ବାସ୍ତବ ନୁହେଁ, ଏପରି ଧନୁ ଥିବ ଯାହା ଧନୁ ନୁହେଁ, ଏପରି ଶର ଥିବ ଯାହା ଶର ନୁହେଁ—ସେହି ରଥରେ ବସି ସେହି ଧନୁ ତୀରରେ ମାରିଲେ ଆମେ ମରିବୁ । ନଚେତ୍ ନୁହେଁ । ଏତଦ୍ ବ୍ୟତୀତ ସମସ୍ତ ବିଦ୍ୟା, ତେଜ, ବଳ, ଐଶ୍ୱର୍ଯ୍ୟ, ସୁଖ, ବୈଭବ, ଭୋଗ, ସମ୍ପତ୍ତି ଇତ୍ୟାଦି ତଥା ସୁନା ରୁପାରେ ତିଆରି ନଗର ଆମକୁ ଦିଅନ୍ତୁ ।" ତିନି ଭାଇଯାକ ସମସ୍ୱରରେ କହିଲେ । ବ୍ରହ୍ମା 'ତଥାସ୍ତୁ' କହି ଅଦୃଶ୍ୟ ହୋଇଗଲେ । ପରେ ବ୍ରହ୍ମାଙ୍କ ଆଦେଶରେ ବିଶ୍ୱକର୍ମା ତିନୋଟି ସୁନ୍ଦର ନଗରୀ ସେମାନଙ୍କ ପାଇଁ ନିର୍ମାଣ କଲେ । ସେଗୁଡ଼ିକୁ ତ୍ରିପୁର ବୋଲି କୁହାଯାଉଥାଏ । ଏହି ନଗରୀ ଗୁଡିକ ଆକାଶରେ ଝୁଲି ରହିଥାଏ । କିନ୍ତୁ ଏହା ବନ, ଉପବନ, ପୁଷ୍କରିଣୀ ଓ ନଦୀ ଦ୍ୱାରା ପୂର୍ଣ୍ଣ ଥାଏ । ସୁବର୍ଣ୍ଣପୁରୀରେ ତାରକାକ୍ଷ, ରଜତପୁରୀରେ କମଳାକ୍ଷ ଓ ଲୌହପୁରୀରେ ବିଦ୍ୟୁନ୍ମାଳୀ ରହୁଥା'ନ୍ତି । ସେମାନେ ସ୍ୱଚ୍ଛନ୍ଦରେ ସମସ୍ତ ଲୋକରେ ଗତି କରିପାରୁଥା'ନ୍ତି ।

ସେମାନେ ଶକ୍ତିଶାଳୀ ହୋଇ ଦେବତାମାନଙ୍କୁ ବହୁତ କଷ୍ଟ ଦେଲେ । ସେମାନେ ଯାଇ ବ୍ରହ୍ମାଙ୍କୁ କହିଲେ, "ତ୍ରିପୁରସୁର ଆମକୁ ଅନେକ କଷ୍ଟ ଦେଉଛନ୍ତି । ଆପଣ ଏହାର କିଛି ପ୍ରତିକାର କରନ୍ତୁ ।"

ବ୍ରହ୍ମା କହିଲେ, "ସେମାନଙ୍କୁ ବଧ କରିବା ମହା ଦୁଷ୍କର କାମ । ଚାଲ ଏକଥା ଯାଇ ଭଗବାନ୍ ଶିବଙ୍କୁ ଜଣାଇବା ।"

ଶିବଙ୍କ ପାଖରେ ଯାଇ ପହଞ୍ଚିଲେ ଦେବତାମାନେ ଓ ବ୍ରହ୍ମା । ଶିବ ସବୁକଥା ଶୁଣି କହିଲେ, "ମୁଁ ତ୍ରିପୁରସୁରକୁ ବଧ କରିବ ନାହିଁ । ତମେ ମୋର ଅଧେ ତେଜ ନେଇ ତାକୁ ମାରିବାକୁ ଚେଷ୍ଟା କର ।" ସେ ପୁଣି ବ୍ରହ୍ମାଙ୍କୁ ଚାହିଁ କହିଲେ, "ଆପଣ ତ ଏପରି ଏକ ଅମୋଘ ବର

ପ୍ରଦାନ କରିଛନ୍ତି । ଏବେ ନିଜେ ଯାଇ ସମ୍ଭାଳନ୍ତୁ ।"

ବ୍ରହ୍ମା କହିଲେ, "ଦେବ, ସେମାନଙ୍କ ମୃତ୍ୟୁର ରହସ୍ୟ ହେଉଛି ଏପରି ଏକ ରଥ ଥିବ ଯାହା ରଥ ନୁହେଁ, ଏପରି ଏକ ଧନୁ ଥିବ ଯାହା ଧନୁ ନୁହେଁ, ଏପରି ଏକ ଶର ଥିବ ଯାହା ଶର ନୁହେଁ । ସେହି ରଥରେ ଚଢ଼ି ସେହି ଧନୁଶର ନେଇ ତିନିନଗରୀ ଏକାଠି ହେବା ସମୟରେ ଯଦି କିଏ ମାରିବ ତେବେ ସେମାନେ ମରିବେ ।" ଏକଥା ଶୁଣି ଶିବ ପୃଥିବୀକୁ ରଥ କଲେ; ଚାରିବେଦ ହେଲେ ଚାରୋଟି ଅଶ୍ୱ, ଚନ୍ଦ୍ର ସୂର୍ଯ୍ୟ ହେଲେ ଦୁଇ ଚକ । ମେରୁପର୍ବତ ହେଲା ଧନୁ, ଆଦିଶେଷ ହେଲେ ବାଣ, ବିଷ୍ଣୁମୂର୍ତ୍ତି ହେଲେ ନାରାୟଣୀ ଅସ୍ତ୍ର । ତା'ପରେ ସେ ଯୁଦ୍ଧ କରିବାକୁ ଗଲେ । ଯୁଦ୍ଧରେ ତ୍ରିପୁରାସୁର ବଧ ହେଲେ ।

ତା'ପରେ ଜଳଧର ନାମକ ଏକ ଦୈତ୍ୟ ପ୍ରକଟ ହେଲା ଓ ସମସ୍ତଙ୍କୁ ହଇରାଣ କଲା । ସେ ଥିଲା ହିରଣ୍ୟକଶିପୁର ଦଶମ ପୁତ୍ର ଅଗ୍ନି-ଜିହ୍ୱର ପୁତ୍ର । ସେ ମଧ୍ୟ କଠୋର ତପସ୍ୟା ଦ୍ୱାରା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଏହି ବର ପାଇଥିଲା କି ତାହାର ମୃତ୍ୟୁ ଦେବଗଣ, ରାକ୍ଷସଗଣ, ନାଗଗଣ ବା ମାନବଗଣଙ୍କ ଦ୍ୱାରା ହେବନାହିଁ ଓ ସେ ପାଣି ମଧ୍ୟରେ ସ୍ୱଚ୍ଛନ୍ଦରେ ବିଚରଣ କରିପାରିବ ।

ବରପ୍ରାପ୍ତ ହୋଇ ସ୍ୱର୍ଗରୁ ସେ ଇନ୍ଦ୍ରଙ୍କୁ ବିତାଡ଼ିତ କଲା ଓ ତିନିପୁରକୁ ଶାସନ କଲା । ଶିବ ଓ ବିଷ୍ଣୁ ମଧ୍ୟ ବୁଝିପାରିଲେ ନାହିଁ କିପରି ଏହି ଅସୁରକୁ ପରାଜିତ କରାଯିବ । ଦୁହେଁ ଏହିପରି ଚିନ୍ତା କରିବା ସମୟରେ ପରମବ୍ରହ୍ମ ଶକ୍ତି ଆବିର୍ଭୂତ ହୋଇ କହିଲେ ତୁମର ଆୟୁଧ ଚକ୍ର ଓ ତ୍ରିଶୂଳକୁ ଦୁହେଁ ଅଦଳବଦଳ କର । ତା'ପରେ ତା' ସହିତ ଯୁଦ୍ଧ କରିବ ଏବଂ ତା'ର ମୃତ୍ୟୁ ହେବ ।" ପରମବ୍ରହ୍ମଙ୍କ କଥା ଶୁଣି ଦୁହେଁ ଦୁହିଁଙ୍କର ଆୟୁଧ ବଦଳ କରି ସାରି ଜଳନ୍ଧରର ଅପେକ୍ଷାରେ ରହିଲେ ।





# ଦୁଇ ଭୂତୁଣୀ

ନଗେନ୍ଦ୍ର ଚାକିରି ଖୋଜିବା ପାଇଁ ସହରକୁ ଯାଇଥିଲା । ବହୁତ ଚେଷ୍ଟା ସତ୍ତ୍ୱେ ଚାକିରି ନ ମିଳିବାରୁ ସେ ଗ୍ରାମକୁ ଲେଉଟି ଆସିଲା । ତାକୁ ଦେଖିବା ମାତ୍ରେ ତା' ବୁଢ଼ୀମା କହିଲେ, "ଆରେ ନଗୀ, ତୁ ଫେରି ଆସିଛୁ? ପାଞ୍ଚଦିନ ଧରି ମୁଁ ତୋ ବାଟ ଚାହିଁ ବସିଛି । ମୋ ଦେହ ଦୁଇଦିନ ହେବ ଭଲ ନାହିଁ । ପୁଣି କାଲି ତୋ ମାମୁଁ ଝିଅ ଭଉଣୀ ଲକ୍ଷ୍ମୀର ବାହାଘର । ବହୁତ କମ୍ ସମୟ ଅଛି । ତୁ ତା'ର ବାହାଘରକୁ ଶୀଘ୍ର ଯା' ।"

ବୁଢ଼ୀମାର କଥା ଶୁଣି ନଗେନ୍ଦ୍ର ବ୍ୟସ୍ତ ହୋଇ ପଡ଼ିଲା । ସେ କିପରି ଲକ୍ଷ୍ମୀର ବିବାହ ତାରିଖ ଭୁଲି ଯାଇଥିଲା? ପିଲାଦିନଠୁ ଦୁହେଁ ଖୁବ୍ ସାଙ୍ଗ ଥିଲେ । ସିଏ ତ ଆଗ ଯିବାର କଥା । ତା'ପରେ ସେ ବୁଢ଼ୀମା'କୁ କହିଲା, "ବୁଢ଼ୀମା; ତମେ ମନେ ନ କରିଥିଲେ ତ ମୁଁ ଭୁଲି ଯାଇଥିଲି । ଏବେ ଯାଉଛି ବଜାରରୁ କିଛି ଉପହାର କିଣି ମାମୁଁ ଘରକୁ ସିଧା ଚାଲିଯିବି ।"

"ଆରେ ଏବେ ତ ରାତି ହେଲାଣି ଥାଉ କାଲି ସକାଳେ ଯିବୁ ।" ବୁଢ଼ୀମା କହିଲେ ।

"ନାହିଁ, ନାହିଁ, ଏବେ ଯିବି । ଏଇ ତ ସଂଧ୍ୟା ହୋଇଛି । ଶୀଘ୍ର ଶୀଘ୍ର ଚାଲିଗଲେ ଘଣ୍ଟାଏ ଭିତରେ ପହଞ୍ଚି ଯିବି ।" ନଗେନ୍ଦ୍ର କହିଲା ଓ ସେହି ମୁହୂର୍ତ୍ତରେହିଁ ମାମୁଁ ଘରକୁ ବାହାରି ପଡ଼ିଲା !

ବଜାରରୁ ଉପହାର କିଣି ଘଣ୍ଟାକ ମଧ୍ୟରେ ସେ ପ୍ରାୟ ମାମୁଁ ଘର ଗାଁ ମୁଣ୍ଡରେ ପହଞ୍ଚିଥାଏ । ସେଠାରେ ଥାଏ ଗୋଟାଏ ତାଳ ବଣ । ତାଳ ବଣ ଭିତର ଦେଇ ଯାଉଛି, ପରିଷ୍କାର ଜହ୍ନ ପଡ଼ିଥାଏ, ଦେଖିଲା ଦୁଇଟି ନାରୀ ମୂର୍ତ୍ତି ଆସି

ଶ୍ରୀମତୀ ଆଶାଲତା ବେହେରା



ତା' ଆଗରେ ରାସ୍ତା ବନ୍ଦ କରି ଠିଆ ହେଲେ । ସେମାନଙ୍କୁ ଦେଖି ସେ ବୁଝିନେଲା ଏମାନେ ମଣିଷ ନୁହନ୍ତି, ଭୂତ । ତା' ଶରୀର ମୁଣ୍ଡଠାରୁ ପାଦ ଯାଏଁ ଡ଼ରରେ ଥରିବାକୁ ଲାଗିଲା । ଏକଥା ଦେଖି ଦୁଇ ଭୂତୁଣୀ ଖିଲ୍ ଖିଲ୍ କରି ହସି ଉଠିଲେ ଓ ବ୍ୟଙ୍ଗପୂର୍ବକ କହିଲେ, "କହୋ ବାବୁ ବେଶଭୂଷାରୁ ତ ଜଣାପଡ଼ୁଛି ବଡ଼ ସାହସୀ । ପୁଣି ଡ଼ରରେ ଏତେ ଥରୁଛ କାହିଁକି ? ଏମିତି ନିଛାଟିଆ ସ୍ଥାନରେ ଅଧ ରାତିରେ କୁଆଡ଼େ ଯାଉଛ ?"

"ମୋ ମାମୁଁ ଝିଅ ଭଉଣୀ ଲକ୍ଷ୍ମୀର ବାହାଘରକୁ ଯାଉଛି ।" ଡ଼ରି ଡ଼ରି କହିଲା ନଗେନ୍ଦ୍ର ।

ଏକଥା ଶୁଣି ଦୁହେଁ ହସି ହସି କହିଲେ, "ଯାହାର ବାହାଘର ହେଉ ଆମେ କିନ୍ତୁ ତୁମ ସହିତ ଚାଲିଲୁ ।"

ନଗେନ୍ଦ୍ର ଟିକିଏ ରହି କହିଲା, "ଦେଖ, ତୁମମାନଙ୍କୁ ମୁଁ ସଙ୍ଗରେ ନେଲେ ମୋ ମାମୁଁ ମୋତେ ମାରି ପକେଇବେ ।"

"ଆଉ ତମେ ଆମକୁ ସଙ୍ଗରେ ନ ନେଲେ ଆମେ କ'ଣ ତମକୁ ଜିଅନ୍ତା ଛାଡ଼ିବୁ କି ?" ଭୂତୁଣୀ ଦୁହେଁ କହିଲେ ।

"ଦେଖ ତମେ ଯଦି ଯିବ ଠିକ୍ ଅଛି । କିନ୍ତୁ କେହି ଜାଣିବେ ନାହିଁ ଯେ ତମେ ଦୁହେଁ ମୋ ସାଥିରେ ଆସିଛ । ଜାଣିଲେ ମୋର ଓ ତମର ଦୁଇପଟରେ ଅନର୍ଥ ଘଟିବ । ତମେମାନେ ଲୁଚିଛପି ଆସିବ ତ ଆସ ।" ନଗେନ୍ଦ୍ର କହିଲା ।

"ଆରେ ଯିବାକୁ କପରି ହେବ ଓ କ'ଣ କରିବାକୁ ହେବ ସେସବୁ ଆମେ ଭଲ ରୂପେ ଜାଣୁ । ଆମେ ଠିକ୍ ଦେଖି ଶୁଣି କାମ କରିବୁ । ତୁମ ଉପରେ କିଛି ବିପଦ ପଡ଼ିବ ନାହିଁ ।" ଭୂତୁଣୀମାନେ କହିଲେ ।

ନଗେନ୍ଦ୍ର ମାମୁଁ ଘରଆଡ଼େ ଚାଲିଥାଏ ଆଉ ବାଟରେ ସେମାନଙ୍କୁ ଦେଖିନାହିଁ । ସେଠାରେ ପହଞ୍ଚି ଦେଖିଲା ସେମାନେ ମଣିଷ ବେଶ ଧରି ଦୁଇଟି ସୁନ୍ଦର ରେଶମୀ ଶାଢ଼ୀ ପିନ୍ଧି ଓ ଅଳଙ୍କାର ଆଦି ଲଗାଇ ଘର ଭିତରେ ପଶିଲେ ।

ନଗେନ୍ଦ୍ର ଘରେ ପ୍ରବେଶ କରିବା ମାତ୍ରେ ତା'ର ମାମୁଁ ତାକୁ ଦେଖି କହିଲେ, "କଥା କ'ଣ ନଗୀ, ତୁ ଏତେ ଥରୁଛୁ କାହିଁକି? ତୋ ଦେହ ବୋଧହୁଏ ଭଲ ନାହିଁ, ତୁ ଯା' ପାଖ ବଖରାରେ ଶୋଇପଡ଼, ମୁଁ ବୈଦ୍ୟଙ୍କୁ ଡ଼କାଉଛି ।"

ନଗେନ୍ଦ୍ର ଯାଇ ବିଛଣାରେ ଶୋଇ ପଡ଼ିଲା । ଇତିମଧ୍ୟରେ ଭୂତୁଣୀ ଦୁଇଜଣ ନିଜର ଦୁଷ୍ଟାମୀରେ ଲାଗି ପଡ଼ିଲେ ।

ବରପକ୍ଷ ଲୋକ ରହିବା ପାଇଁ ଘର ସାମ୍ନାରେ ଆଉ ଗୋଟିଏ ଘର ଭଡ଼ା ନିଆ ଯାଇଥାଏ । ସେଇ ଘର ଭିତରୁ ଜଣେ ଭୂତୁଣୀ ବରର ମା' ବେଶ ଧରି ଯାଇ କନ୍ୟା ଘରର ଲୋକଙ୍କ ପାଖରେ ପହଞ୍ଚିଲା ।

ସମ୍ବନ୍ଧୁଣୀଙ୍କୁ ଦେଖି ଲକ୍ଷ୍ମୀର ମା' କହିଲେ, "ଆସନ୍ତୁ ସମ୍ବନ୍ଧୁଣୀ, ଭିତରକୁ ଆସନ୍ତୁ ।"

"ତମେ ମୋ ବୋହୂକୁ କ'ଣ କ'ଣ ଜିନିଷ, ଖାଦ୍ୟ, ଲୁଗାପଟା ଓ ଯୌତୁକ ଦେଉଛ ଦେଖିବାକୁ ଚାଲି ଆସିଲି ।" ବରର ମା' ସୁହାସିନୀ ବେଶ ଧରି ଆସିଥିବା ଭୂତୁଣୀ କହିଲା ।

ନିକଟରେ ବଡ଼ ବଡ଼ ଟୋକେଇରେ ଲଡୁ, ପେଡ଼ା, ଜିଲେପି ସବୁ ଥିଲା । ଜୟାଦେବୀ ସେସବୁ ତାଙ୍କୁ ଦେଖାଇ ଦେଲେ ।

ଭୂତୁଣୀ ଗୋଟିଏ ଜିଲେପି ଚାଖି କହିଲା, "ଛି, ଛି, ଏଗୁଡ଼ା ତମ ଝିଅର ଦେହ ରଙ୍ଗ ପରି ହୋଇଛି । ଏଗୁଡ଼ା କ'ଣ ପୁରୁଣା ଗୁଡ଼ରେ ତିଆରି କରିଛ ନା କ'ଣ?"





ଏପରି କଥା ଶୁଣି ଲକ୍ଷ୍ମୀ ଓ ଜୟାଙ୍କ ମନ କଷ୍ଟ ହେଲା। ସେମାନେ କିଛି ଚୁପ୍ ରହିଲେ।

ଅନ୍ୟ ସବୁ ମିଠାଇକୁ ମଧ୍ୟ ଭୂତୁଣୀ ଖାଇଲା କିଛି କିଛି ଓ ସେହିପରି ନାନା ବାଜେ ମନ୍ତବ୍ୟ କଲା। ତା'ପରେ କହିଲା, "ଦୁଇଟି ବଡ଼ ହାଣ୍ଡିରେ ଘିଅ ଓ ମାଲପୁଆ ଦେବ।"

"କାହିଁକି? ଏତେ ତରତର କାହିଁକି? ଏବେଠୁ ଭରି ରଖିଲେ ଜିନିଷ ସବୁ ନଷ୍ଟ ହୋଇଯିବ।" ଜୟା କହିଲେ।

"ଆରେ ଆମ ଘରର ବୋହୂମାନେ ବାସୀ ଜିନିଷ ଖାଇବାକୁ ଭଲ ପାଆନ୍ତି। ଲଡୁ ତ ଦଶଦିନ ରହିବ। ସେଦିନ ପର୍ଯ୍ୟନ୍ତ ତମ ଝିଅ ଘିଅ ଓ ମାଲପୁଆ ଖାଇବ।" ସମ୍ବନ୍ଧୀ-ରୂପୀ ଭୂତୁଣୀ କହିଲା।

ଏକଥା ଶୁଣି ଲକ୍ଷ୍ମୀକୁ ବାନ୍ତି ଲାଗିଲା, ସେ ଯାଇ ବାନ୍ତି କରି ପକାଇଲା। ତା'ପରେ ମା'କୁ ଦେଖି କହିଲା, "ମା, ମୁଁ ମରିଯିବି ପଛେ ଏ ଘରେ ବୋହୂ ହେବାକୁ ଯିବିନାହିଁ।"

ଝିଅର କଥା ଶୁଣି ଜୟାଙ୍କର ମନ ଦୁଃଖ ହେଲା। ସେ ସ୍ୱାମୀଙ୍କ ପାଖକୁ ଦୌଡ଼ିଲେ। ସେଠାରେ ଯାଇ ସବୁ କଥା କହିଲେ।

ଏଣେ କ'ଣ ହୋଇଛି ଦ୍ୱିତୀୟ ଭୂତୁଣୀ ତା'ର ଦୁଷ୍ଟାମି ଆରମ୍ଭ କରି ଦେଇଛି। ବରପକ୍ଷର ଘରର ଗୋଟିଏ ପ୍ରକୋଷ୍ଠରେ ବର ସୁରେନ୍ଦ୍ର ବିଶ୍ରାମ କରୁଥାଏ। ବହୁତ ମଶା ଥିବାରୁ ସେ ଶୋଇ ପାରୁ ନଥାଏ। ଦ୍ୱିତୀୟ ଭୂତୁଣୀ ବୋହୂ ଲକ୍ଷ୍ମୀର ବେଶ ଧରି, ହାତରେ ପଙ୍ଖାଟିଏ ନେଇ ଯାଇ ପହଞ୍ଚିଲା।

ସୁରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତମେ କାହିଁକି ଏଠାକୁ ଆସିଲ? କେହି ଦେଖିଲେ କ'ଣ କହିବ? ଜାଣିଲେ ସମସ୍ତେ ହସିବେ।"

"ମୁଁ ବି ସେମାନଙ୍କୁ ହସି ଉଡ଼ାଇ ଦେବି। ଏଠି ତମେ ମଶା ଦାଉରେ ଶୋଇ ପାରୁନା। ଆମ ଗାଁର ମଶାମାନେ ବହୁତ ବଡ଼ ଓ ଭୟାନକ।" କହିଲା ଭୂତୁଣୀ ଆଉ ପଙ୍ଖା କରି ମଶା ଘଉଡ଼ାଇଲା। ତା'ପରେ "ହେଇ ମଶାଟାଏ।" କହି ପଙ୍ଖାରେ ଜୋର୍‌ରେ

ସୁରେନ୍ଦ୍ରକୁ ମାରିଲା । ତା'ପରେ ମଶାର ନାମ ଜଣ ମାରି ଚାଲିଲା ।

ବିଚାରା ସୁରେନ୍ଦ୍ର ତ ବର ହୋଇ ବସିଛି, ନା ରାଗି ପାରୁଛି ନା କିଛି କରି ପାରୁଛି । ଶେଷରେ ସେ ଲକ୍ଷ୍ମୀରୂପୀ ଭୂତୁଣୀ ହାତରୁ ପଙ୍ଖା ଛଡ଼ାଇ ନେଇ କହିଲା, "ତମେ ଚଲ ଏଠାରୁ ।"

ଭୂତୁଣୀ କାନ୍ଦିବାର ଅଭିନୟ କରି କହିଲା, "ତୁମକୁ ମଶାଙ୍କ ଉପଦ୍ରବରୁ ରକ୍ଷା କରିବାକୁ ଯାଇ ମୁଁ ପଙ୍ଖାରେ ମାରୁଥିଲି ସିନା, ଏତିକିରେ ତମେ ରାଗି ଯାଉଛ । ଆଉ କାଲିକି କାଲି ବିବାହ ପରେ ଯଦି ସତରେ ମୁଁ ତୁମକୁ ପିଟେ ତେବେ ତ ତମେ ବୋଧହୁଏ ମୋତେ ତ୍ୟାଗ କରିଦେବ ।"

"କ'ଣ ବିବାହ ପରେ ତମେ ମୋତେ ମାରିବ ?" ସୁରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ତମ ରୋଷେଇ ମୋତେ ଯଦି ଭଲ ନ ଲାଗିବ ତ କାହିଁକି ମାରିବି ନାହିଁ ?" ଭୂତୁଣୀ କହିଲା ।

"କ'ଣ ହେଲା ମୋତେ ରୋଷେଇ କରିବାକୁ ପଡ଼ିବ ?" ସୁରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ତା'ହେଲେ କ'ଣ ତମେ କେବଳ ବାସନ ମାଜି ରହିବ ବୋଲି ଭାବୁଛ ? ସେସବୁ ଚଳିବ ନାହିଁ । ଘର ସଫା, ଲୁଗା ଧୁଆ ପ୍ରଭୃତି କାମ ତ କରିବ, ପୁଣି ତା' ଛଡ଼ା ଅନ୍ୟାନ୍ୟ ଛୋଟ ଛୋଟ କାମ ମଧ୍ୟ କରିବ ।" ଭୂତୁଣୀ କହିଲା ।



ସୁରେନ୍ଦ୍ର ରାଗରେ ଖଟ ଘୁଡ଼ ଛୁଡ଼ା ହୋଇ ପଡ଼ି କହିଲା, "ତାହାହେଲେ ତ ତୁମପାଇଁ ସ୍ୱାମୀ ଦରକାର ନାହିଁ, ଦରକାର ଏକ ଚାକର ।"

ତା'ପରେ ସେ ଦୌଡ଼ି ଦୌଡ଼ି ଯାଇ ନିଜ ବାପ ମା'ଙ୍କୁ ସବୁକଥା ଜଣାଇଲା ଓ କହିଲା, "ଏପରି ପିଶାଚୀକୁ ବୋହୂ କରୁଛ ? ମୁଁ ଏଠାରେ ବିବାହ କରିବି ନାହିଁ ।"

କିଛି ସମୟ ମଧ୍ୟରେ ଗ୍ରାମରେ ପ୍ରଚାର ହୋଇଗଲା କି ବର ଓ କନ୍ୟା ଦୁଇପକ୍ଷ ବିବାହରେ ନାରାଜ । ତା'ପରେ ବନ୍ଧୁବାନ୍ଧବ ଓ ଭଦ୍ର ଲୋକମାନେ ମଧ୍ୟସ୍ଥି ହୋଇ ଦୁଇ-ପକ୍ଷଙ୍କୁ ଡାକି କହିଲେ, "ଇଏ କି ଅଛା

ତାମସା ଚାଲିଛି ? ଦୁଇ ପକ୍ଷ ଲୁହ କାହିଁକି ବିବାହ ବନ୍ଦ ହେବ ।"

କନ୍ୟା ତରଫ କହିଲେ, "ବରର ମା' ଚଣ୍ଡୀ, ଟିକଏ ଆଗରୁ ଯାଇ ଆମକୁ ଅପମାନ କରିଛି । ସେଠି ଆମେ ଝିଅ ଦେବୁନି ।" ତା'ପରେ ସବୁ ଘଟଣା କହିଲେ ।

ବରର ମା' ଆଶ୍ଚର୍ଯ୍ୟ ହୋଇ କହିଲେ, "ମୁଁ ତ କନ୍ୟା ଘରକୁ ଆଦୌ ଯାଇ ନାହିଁ । ଆରମ୍ଭରୁହିଁ ଏଇଠି ଅଛି ।"

ବରପକ୍ଷ ଲୋକମାନେ କହିଲେ, "କନ୍ୟା ତ ଏକବାରେ ରାକ୍ଷସୀ ସ୍ୱଭାବର । ସେ ନିଜର ଭାବୀ ସ୍ୱାମୀଙ୍କୁ ଅପମାନ ଦେଇ କହିଛି କି ସେ ତାକୁ ଘରର ସବୁ କାମ କରାଇବ । କାମ ମନକୁ ନ ଆସିଲେ ପିଟିବ ।"

ଏକଥା ଶୁଣି ଲକ୍ଷ୍ମୀ ଦୁଃଖରେ ଭାଙ୍ଗି ପଡ଼ିଲା । କେହି ବୁଝିପାରୁ ନାହାନ୍ତି ଘଟଣା କ'ଣ । ଦୁଇପକ୍ଷ ପୁଣି କଳି କରିବାକୁ ଲାଗିଲେ । ଭୂତୁଣୀ ଦୁହେଁ ଦେଖିଲେ ସେମାନେ ପେଟ ଭରି ଖାଇଛନ୍ତି ଓ ଯେଉଁ ନାଟକ କରିଥିଲେ ତାହା ମଧ୍ୟ ସଫଳ ହୋଇଛି । ତାଙ୍କ ଆନନ୍ଦ କହିଲେ ନ ସରେ ।

ଇତିମଧ୍ୟରେ ନଗେନ୍ଦ୍ରକୁ ଦେଖିବାକୁ ଯାଇ ତା' ମାମୁଁ କହିଲେ, "ଶୀଘ୍ର ବୈଦ୍ୟ ହନୁମାନଜୀଙ୍କୁ ଡାକ ମୋ ଭଣଜାର ବହୁତ ଜର ।"

"ହନୁମାନ" ନାମ ଶୁଣି ଦୁଇ ଭୂତୁଣୀ ଚିତ୍କାର କରି କଳା ବିଲେଇ ରୂପରେ ସେଠାରୁ ଡିଆଁ ମାରି ପଳାଇଲେ । ଏ ଦୃଶ୍ୟ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଓ କେତେକ ହସି ହସି ଗଡ଼ିଲେ ।

ସେମାନେ ଚାଲିଯିବା ପରେ ନଗେନ୍ଦ୍ର ସମସ୍ତ ଘଟଣା କହିଲା । ସମସ୍ତେ ବୁଝିପାରିଲେ କି ଏ ଗୋଳମାଳ ଘଟାଇବା ସେଇ ଦୁଇଜଣଙ୍କ କାମ ।

ତା'ପରେ ସମସ୍ତେ ଆହୁରି ହସିଲେ । ବାହାଘର ବହୁତ ଧୁମ୍‌ଧାମ୍‌ରେ ସମ୍ପନ୍ନ ହେଲା ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଫେବ୍ରୁଆରି ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



D. M. Raja Rao



A. L. Syed

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଯାଏଁରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଡିସେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ଦିଆଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ଅକ୍ଟୋବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଦେଶ ସେବା ପଥେ ଜୀବନ ଯେ ଢାଳେ ସେହି ଅଟେ ଏକା ବୀରପୁରୁଷ !
ଦ୍ୱିତୀୟ ଚିତ୍ର : ମାନବ କଲ୍ୟାଣେ ଈଶ୍ୱର ଯେ ଚିନ୍ତେ ସେହି ଅଟେ ଏକା ମହାପୁରୁଷ !!

ପୁରସ୍କାର ବିଜୟୀ : ରମାନନ୍ଦ ପରିଡ଼ା, ଦେଓଗାଁ, ପୁରୀ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳର ଉତ୍ତର

୧. ଯମୁନା ନଗର। ୨. ପଣ୍ଡିତ ଗୋଦାବରୀଶ ମିଶ୍ର। ୩. ତାପ୍ତୀ।
୪. ଭୁବନେଶ୍ୱର। ୫. ଡ: ପ୍ରାଣକୃଷ୍ଣ ପରିଜା।

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

ଆଖି ଫେରିଯାଏ ବାରବାର
ଦେଖି ଚମକ ସୁପର ରିନ୍ ର






**ସୁପର ରିନ୍ ର ଶୁଭ୍ରତାର ଚମକ ଅନେକ ବେଶୀ**

ଅନ୍ୟ ଯେ କୌଣସି ଡିଟର୍ଜେଣ୍ଟ ଟେବଲେଟ କିମ୍ବା ବାର୍ ତୁଳନାରେ ଅଧିକ ଶୁଭ୍ର !

ହିନ୍ଦୁସ୍ଥାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ